ଆଦର୍ଶ

# ବିଦ୍ୟାଳୟ ପରିଚାଳନା

କାଶୀନାଥ ଷଡ଼ଙ୍ଗୀ

ଫ୍ରେଣ୍ଡସ୍ ପବ୍ଲିଶର୍ସ

# ।। ଆଦର୍ଶ ବିଦ୍ୟାଳୟ ପରିଚାଳନା ।।

ଲେଖକ:
ଶ୍ରୀ କାଶୀନାଥ ଷଡ଼ଙ୍ଗୀ ବ, ଏ, ଡ଼, ଇଡ଼
ପ୍ରଧାନ ଶିକ୍ଷକ
ବେସିକ୍ ଟ୍ରେନିଂସ୍କୁଲ
ନବରଙ୍ଗପୁର, କୋରାପୁଟ

ପ୍ରକାଶକ:
**ଫ୍ରେଣ୍ଡସ୍ ପବ୍ଲିଶର୍ସ**
ବନୋଦ ବହାରୀ-କଟକ—୨

ମୂଲ୍ୟ:
ବାନ୍ଧେଇସହ ଟ ୨-.୨୫ ନୂ.ପ:
ସାଧା ଟ୧. ୫୦ ନୂ.ପ.

ପ୍ରଥମ ପ୍ରକାଶ:
୧୯୬୨ (ସେପ୍ଟେମ୍ବର)

ମୁଦ୍ରାକର
ଯୁଗରୂପା ପ୍ରେସ
କଟକ—୧

# ଲେଖକର ପଦେ

ଓଡ଼ିଆ ଭାଷାରେ ବିଦ୍ୟାଳୟ ପରିଚାଳନା ସମ୍ପର୍କରେ ଏଥି ପୂର୍ବରୁ ଅଳ୍ପ କେତେଖଣ୍ଡି ପୁସ୍ତକ ଯେ ପ୍ରକାଶିତ ନ ହୋଇଛି ତାହା ନୁହେଁ, ତଥାପି ଏହି ନୂତନ ପୁସ୍ତକର ଆବଶ୍ୟକତା ଅନୁଭୂତ ହେଲା । ଏଥିରେ ଅନ୍ୟ କୌଣସି ପୁସ୍ତକର ଚର୍ବିତ ଚର୍ବଣ କରା-ଯାଇ ନାହିଁ । ଏହି ପୁସ୍ତକଟି ମୋର ଦୀର୍ଘ ଅଧ୍ୟାପନା ଜୀବନର ଅଭିଜ୍ଞତା ପ୍ରସୂତ ।

ଯୁଗ ବଦଳି ଯାଇଛି । ଏବେ ଭାରତ ପୃଥିବୀ ମଧ୍ୟରେ ସବୁଠାରୁ ବଡ଼ ଗଣତାନ୍ତ୍ରିକ ରାଷ୍ଟ୍ର । ଏଠାରେ ଗଣତନ୍ତ୍ରର ମହାନ୍ ପରୀକ୍ଷା ଚାଲିଛି । ଭାରତରେ ଗଣତନ୍ତ୍ରର ସଫଳତା ଉପରେ ପୃଥିବୀରେ ଗଣତନ୍ତ୍ରର ଭବିଷ୍ୟତ ନିର୍ଭର କରେ । କିନ୍ତୁ ବିଦ୍ୟାଳୟ ଜୀବନରେ ଗଣତାନ୍ତ୍ରିକ ମନୋଭାବର ବିକାଶ ନହେଲେ ଦେଶରେ ଗଣତନ୍ତ୍ରର ଅନୁକୂଳ ବାତାବରଣ ସୃଷ୍ଟି ହୋଇ ପାରିବ ନାହିଁ । ଏହି ଦୃଷ୍ଟିରୁ ବିଦ୍ୟାଳୟ-ଜୀବନରେ ହିଁ ଗଣତନ୍ତ୍ରର ସଫଳ ପ୍ରୟୋଗ ଓ ପରୀକ୍ଷା ଆବଶ୍ୟକ ।

ଗଣତନ୍ତ୍ର ଏକ ନୂତନ ଜୀବନ-ଦର୍ଶନ । ଏହି ଜୀବନ-ଦର୍ଶନ ଅଭାବରୁ ଭାରତର ପଡ଼ୋଶୀ ରାଷ୍ଟ୍ରମାନଙ୍କରେ ଗୋଟିକ ପରେ ଗୋଟିଏ ଗଣତନ୍ତ୍ର ଭୁଷୁଡ଼ି ପଡ଼ୁଛି, ତେଣୁ ଦେଶକୁ ଉପଯୁକ୍ତ

ଗଣତାନ୍ତ୍ରିକ ମନୋଭାବାପନ୍ନ ସୁନାଗରିକ ଉପହାର ଦେବା ଭାରତୀୟ ଜାତୀୟ ଶିକ୍ଷାପଦ୍ଧତିର ପ୍ରଧାନ ଲକ୍ଷ୍ୟ । ଏହି ଦୃଷ୍ଟିରୁ ବିଦ୍ୟାଳୟ-ପରିଚାଳନା ନୀତିରେ ମଧ୍ୟ ସଂସ୍କାର ସର୍ବାଦୌ ଆବଶ୍ୟକ । କହିବା ବାହୁଲ୍ୟ ଯେ ଏହି ନୂତନ ଅଭିମୁଖ୍ୟରେ ଏହି ନୂତନ ପୁସ୍ତକଟି ଆତ୍ମପ୍ରକାଶ କରିଛି ।

ଓଡ଼ିଶାର ଶିକ୍ଷକ ଓ ଶିକ୍ଷାବ୍ରତୀମାନେ ବିଦ୍ୟାଳୟ-ପରିଚାଳନା ଷେତ୍ରରେ ଏହି ନୂତନ ନୀତିଗୁଡ଼ିକ ପ୍ରୟୋଗ ଓ ପରୀକ୍ଷା କରି ଏହାର ଉପାଦେୟତା ଓ କାର୍ଯ୍ୟକାରିତା ଉପଲବ୍ଧି କରିବାକୁ ବିଶେଷ ଅନୁରୋଧ ।

ଜୟହିନ୍ଦ୍

ନବରଙ୍ଗପୁର
ତା ୧୫-୮-୧୯୬୨

ବିନୟାବନତ
ଲେଖକ

# ସୂଚିପତ୍ର

ବିଷୟ | ପୃଷ୍ଠା



—o—

# ଆଦର୍ଶ ବିଦ୍ୟାଳୟର ପରିବେଶ

ଅବସ୍ଥିତ—ବିଦ୍ୟାଳୟ-ଗୃହ ଏକ ଖୋଲା ଓ ଉଚ୍ଚ ଜାଗାରେ ପ୍ରତିଷ୍ଠିତ ହେବା ଉଚିତ । ମୁକ୍ତବାୟୁ ଓ ଆଲୋକର ସୁବିଧା ଦୃଷ୍ଟିରୁ ସ୍ଥାନ-ନିର୍ବାଚନ ଓ ଗୃହ-ନିର୍ମାଣର ବ୍ୟବସ୍ଥା କରିବାକୁ ହେବ । ସ୍ଥାନଟି ସନ୍ତସନ୍ତିଆ ଓ ଅନ୍ଧାରୁଆ ହେବା ଅନୁଚିତ, ଯେତେଦୂର ସମ୍ଭବ ଗାଁଠାରୁ ସାମାନ୍ୟ ଦୂରରେ ଓ ଏକ କେନ୍ଦ୍ର ସ୍ଥଳରେ ଏହା ପ୍ରତିଷ୍ଠିତ ହେବ । ପାନୀୟ ଜଳର ସୁବିଧା ପାଇଁ ବିଦ୍ୟାଳୟର ହତା ମଧ୍ୟରେ କୂଅ ନଳକୂଅ ଆଦିର ସୁବ୍ୟବସ୍ଥା କରାଯିବା ଉଚିତ । ବିଦ୍ୟାଳୟ ପାଇଁ ସ୍ଥାନ-ନିର୍ବାଚନ ପୂର୍ବରୁ ଜଳବାୟୁ ଓ ରାସ୍ତାଘାଟର ଯୋଗାଯୋଗ ବ୍ୟବସ୍ଥା ପ୍ରତି ବିଶେଷ ଦୃଷ୍ଟି ଦେବାକୁ ହେବ ।

ବିଦ୍ୟାଳୟରେ ପ୍ରାକୃତିକ ପରିବେଶ ସୃଷ୍ଟି କରିବା ଦୃଷ୍ଟିରୁ ଏହାର ଅଳ୍ପ ଦୂରରେ ଏକ ବିସ୍ତୀର୍ଣ୍ଣ ପ୍ରାନ୍ତର ଓ କ୍ଷୁଦ୍ର ଉଦ୍ୟାନ ରହିଥିଲେ ଭଲ । ଉଦ୍ୟାନଟି ବିଭିନ୍ନ ଫୁଲ ଓ ଫଳଗଛରେ ମଣ୍ଡିତ ହୋଇ ବିଦ୍ୟାଳୟର ଶ୍ରୀ ବୃଦ୍ଧି ସାଧନ କରୁଥିବା ଉଚିତ । ବସନ୍ତ ଓ ଗ୍ରୀଷ୍ମ ଋତୁରେ ଏହି ଉଦ୍ୟାନର ସ୍ଥାୟୀ ବୃକ୍ଷଛାୟା ତଳେ ଏକ ଅତି ପ୍ରାକୃତିକ ବାତାବରଣ ମଧ୍ୟରେ ଶିକ୍ଷାଦାନ-କାର୍ଯ୍ୟ ନିର୍ବାହ କରାଯାଇ ପାରେ ।

ସ୍ୱାସ୍ଥ୍ୟ:—ବିଦ୍ୟାଳୟର କୋଠରୀ ଗୁଡ଼ିକ ପ୍ରଶସ୍ତ ଓ ଖୋଲା ହେବା ଉଚିତ । ବିଦ୍ୟାଳୟର ସମ୍ମୁଖ ଭାଗ ଦକ୍ଷିଣ ଦିଗକୁ ହେବ; କାରଣ ଏହା ଫଳରେ ଦକ୍ଷିଣା ପବନ ଘର ମଧ୍ୟରେ ସ୍ୱଚ୍ଛନ୍ଦ ଭାବରେ ପ୍ରବେଶ କରି ପାରିବ । କୋଠରୀ ଗୁଡ଼ିକରେ ବଡ଼ ବଡ଼ ଦୁଆର ଓ ଝରକା ରହିବା ସର୍ବାଦୌ ଉଚିତ ।

ବିଦ୍ୟାଳୟରେ ପ୍ରତି ପଚିଶ ଜଣ ଛାତ୍ରଙ୍କ ପିଚ୍ଛା ଗୋଟିଏ ମୂତ୍ରଖାନା ଓ ପ୍ରତି ପଚିଶ ଜଣ ଛାତ୍ରଙ୍କ ପିଚ୍ଛା ଗୋଟିଏ ଲେଖାଁ ପାଇଖାନାର ସୁବ୍ୟବସ୍ଥା କରିବାକୁ ହେବ । ସେ ସବୁ ବିଦ୍ୟାଳୟ ଠାରୁ ଦୂରରେ ଓ ଉତ୍ତର କିମ୍ବା ପଶ୍ଚିମ ଦିଗରେ ରହିବା ଉଚିତ । ଛାତ୍ରାବାସ ସକାଶେ ପ୍ରତି ଦଶ ଜଣଙ୍କ ପାଇଁ ଗୋଟିଏ ଲେଖାଁ ଝାଡ଼ା—ପାଇଖାନା କରିବାକୁ ହେବ । ଛାତ୍ର ଓ ଶିକ୍ଷକମାନେ ମିଳିତ ଭାବରେ ବିଦ୍ୟାଳୟର ସଫାଇ ଓ ସ୍ୱାସ୍ଥ୍ୟ ଦାୟିତ୍ୱ ବହନ କରିବେ ।

ଅଳିଆ ଆବର୍ଜନାକୁ ପଚାଇ ମିଶ୍ରସାର (Compost manure) ପ୍ରସ୍ତୁତ କରିବା ଦୃଷ୍ଟିରୁ ବିଦ୍ୟାଳୟ-ହତାରେ କେତୋଟି ସାରଖାତ ଖୋଳାଇବାକୁ ହେବ । ଏଥିରେ ପ୍ରତ୍ୟେକ ଦିନ ବିଦ୍ୟାଳୟର ଅଳିଆ ମଇଳା ପଡ଼ିବ ଓ ଗୋବର ପାଣି ବହଳ ଭାବରେ ଛିଞ୍ଚା-ହେବ । ମିଶ୍ରସାର ଖାତରେ ଯେପରି ସୂର୍ଯ୍ୟକିରଣ ନ ପଡ଼େ, ସେଥିପ୍ରତି ଦୃଷ୍ଟି ଦେବାକୁ ହେବ । ଆଉମଧ୍ୟ ଏଥିରେ କାଚ, କଣ୍ଟା, ଗୋଡ଼, ପଥର, ଖପରା, ସଢ଼ୋଇ ଆଦି ନ ପଚିବା ଜିନିଷ ଆଦୌ ପକାଯିବ ନାହିଁ । ଶୀତ ଓ ଖରା ଦିନରେ ପାଣି ପକାଇ ମଇଳାକୁ ଓଲଟ ପାଲଟ କରାଯିବ ଓ ଖାତ ଭର୍ତ୍ତି ହୋଇଗଲେ ମାଟିର ଆବରଣ ଦେଇ ପୂରି କରିଦିଆଯିବ । ଉପଯୁକ୍ତ ଦୃଷ୍ଟି ଦିଆଗଲେ ଛ’ ମାସ ମଧ୍ୟରେ ଅଳିଆ ପଚି ସାରୋପଯୋଗୀ ହୋଇଯିବ ।

ମିଶ୍ରସାର ଖାତର ଗଭୀରତା ସାଢ଼େ ତିନଫୁଟରୁ ଅଧିକ ହେବା ଅନୁଚିତ ।

ବିଦ୍ୟାଳୟ ହତା ମଧ୍ୟରେ କୂଅ ବା ନଳକୂଅ ଖୋଳାଇବା ସମ୍ଭବ ନ ହେଲେ ପୋଖରୀ ବା ନଦୀ ପାଣିକୁ ସିଝାଇ, ଛାଣି, ଥଣ୍ଡାକରି ପିଆଯାଇପାରେ । ପ୍ରତ୍ୟେକ ଶ୍ରେଣୀକୋଠରୀରେ ପାନୀୟ ଜଳର ସୁବ୍ୟବସ୍ଥା ରହିବା ଉଚିତ । ଏହା ବ୍ୟତୀତ ନିମ୍ନ ଶ୍ରେଣୀ-ମାନଙ୍କରେ ଘଷିପାଉଁଶ, ଦାନ୍ତକାଠି, ନଖକଟା କ୍ଷୁର, ମୁହଁପୋଛା କନା, ପାନିଆଁ, ଦର୍ପଣ, କଳୁରୀ ଇତ୍ୟାଦି ମଧ୍ୟ ରଖାଯିବ ।

ବିଦ୍ୟାଳୟର ଗୋଟିଏ ସ୍ୱତନ୍ତ୍ର କୋଠରୀରେ "ଆରୋଗ୍ୟ-କେନ୍ଦ୍ର" (Health clinic) ଖୋଲାଯିବା ଉଚିତ । ଏଠାରେ ପ୍ରାଥମିକ ଚିକିତ୍ସାର ସମସ୍ତ ସୁବ୍ୟବସ୍ଥା ଥିବା ଆବଶ୍ୟକ । କେତେକ ସାଧାରଣ ରୋଗର ଅତ୍ୟାବଶ୍ୟକ ଔଷଧ ମଧ୍ୟ ଏଠାରେ ରହିବ । ଛାତ୍ରମାନେ ଏଠାରେ ରୋଗୀସେବା ଛଳରେ ପ୍ରତ୍ୟକ୍ଷ ଭାବରେ ସ୍ୱାସ୍ଥ୍ୟ-ବିଜ୍ଞାନ ଶିକ୍ଷାଲାଭ କରିପାରିବେ ।

ବିଦ୍ୟାଳୟ-ବଗିଚାର ଗୋଟିଏ ପଟାଳିରେ ଔଷଧ କିଆରି-ଟିଏ କରିବାକୁ ହେବ । କେତେକ ଅତି ସାଧାରଣ ରୋଗର ଆଶୁ ପ୍ରତିକାର ଉଦ୍ଦେଶ୍ୟରେ ଆବଶ୍ୟକ ଔଷଧ-ଗଛ ସେଠାରେ ଲଗାଇ ସେସବୁର ଯତ୍ନ ନେବାକୁ ହେବ । ଏହାଦ୍ୱାରା ଛାତ୍ରମାନେ ଉଦ୍ଭିଦବିଜ୍ଞାନ ସାଥେ ସାଥେ ଆୟୁର୍ବେଦୀୟ ଚିକିତ୍ସା ସମ୍ପର୍କରେ କିଛି ଅନୁଭୂତି ଲାଭ କରିପାରିବେ ।

ଛାତ୍ରାବାସରେ ଖାଦ୍ୟ ପେୟର ସୁବିଧା ପାଇଁ ପାକଶାଳ ରହିବ । ଇଂରାଜୀ ଏକ ପ୍ରବଚନ ଅଛି—**Health is made or marred in the kitchen** ଅର୍ଥାତ ରୋଷେଇ ଶାଳରେ ହିଁ ସ୍ୱାସ୍ଥ୍ୟ ଗଢ଼ିଉଠେ ବା ଭାଙ୍ଗିଯାଏ । ତେଣୁ ସ୍ୱାସ୍ଥ୍ୟଲାଭ ଦୃଷ୍ଟିରୁ ପାକଶାଳାକୁ ଏକ

ପ୍ରୟୋଗଶାଳା (Laboratory)ରୂପେ ପରିଣତ କରିବାକୁ ହେବ । ସ୍ୱାସ୍ଥ୍ୟ ଓ ଗୃହବିଜ୍ଞାନର ଅନେକ ତତ୍ତ୍ୱ ବାସ୍ତବ ଉପାୟରେ ଓ କାର୍ଯ୍ୟ ସ୍ଥଳରେ ଏଠାରେ ଶିକ୍ଷାଲାଭ କରାଯାଇପାରେ ।

ଛାତ୍ରାବାସର ଛାତ୍ରମାନେ ପାଳି ଅନୁସାରେ ଖାଦ୍ୟ ବିଭାଗର ସମସ୍ତ କାର୍ଯ୍ୟ କରିବେ । ସୁଷମ ଖାଦ୍ୟ ଓ ମାସିକ ଅପବ୍ୟୟର ଯୋଜନାକରି ସେମାନେ ତାହା କାର୍ଯ୍ୟକାରୀ କରିବାକୁ ଶିଖିବେ । ମଝିରେ ମଝିରେ ପର୍ବ ପର୍ବାଣୀ ପାଳନ ଓ ଭୋଜଭାତର ଦାୟିତ୍ୱ ମଧ୍ୟ ସେମାନେ ବହନ କରିବେ । ବିଦ୍ୟାଳୟର ସାଧାରଣ ଛାତ୍ର-ମାନଙ୍କ ଖାଦ୍ୟରେ ରହିଥିବା ଅଭାବ ପୂରଣ କରିବା ଉଦ୍ଦେଶ୍ୟରେ ସମୟେ ସମୟେ ସ୍ୱତନ୍ତ୍ର ଖାଦ୍ୟପେୟର ବ୍ୟବସ୍ଥା କରାଯାଇପାରେ । ଏହା ଫଳରେ ଛାତ୍ରମାନଙ୍କ ମଧ୍ୟରେ ଏକତା ଓ ଆତ୍ମୀୟତା ବୃଦ୍ଧି-ପାଇବା ସଙ୍ଗେ ସଙ୍ଗେ ବିଦ୍ୟାଳୟ ପ୍ରତି ସେମାନଙ୍କ ଆକର୍ଷଣ ମଧ୍ୟ ବଢ଼ିବ ।

କୃଷି—ପ୍ରତ୍ୟେକ ବିଦ୍ୟାଳୟ ଯେତେଦୂର ସମ୍ଭବ ସ୍ୱାବଲମ୍ବନ ହାସଲ କରିବା ପାଇଁ ଉଦ୍ୟମ କରିବା ଉଚିତ । ଭାରତ ଏକ କୃଷିପ୍ରଧାନ ଦେଶ । ଏଠାରେ ଶତକଡ଼ା ଅଶୀ ଜଣ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ କୃଷି ଉପରେ ନିର୍ଭର କରି ଚଳନ୍ତି । ତେଣୁ ପ୍ରତ୍ୟେକ ବିଦ୍ୟାଳୟ କୃଷି-ବିଜ୍ଞାନର ଏକ ବାସ୍ତବ 'ପ୍ରୟୋଗ ଶାଳା' ହେବା ଉଚିତ । ଏ ଦିଗରେ ବିଦ୍ୟାଳୟସବୁ ଦେଶବାସୀଙ୍କୁ ନେତୃତ୍ୱ ଦେବାକୁ ସମର୍ଥ ହେବା ଦରକାର । ଏ ଦୃଷ୍ଟିରୁ ନିମ୍ନମୌଳିକ ବିଦ୍ୟାଳୟରେ ତିନି ଏକର ଓ ଉଚ୍ଚ ମୌଳିକ ବିଦ୍ୟାଳୟରେ ପାଞ୍ଚ ଏକର ଅନ୍ତତଃ କୃଷଯୋଗ୍ୟ ଜମି ରହିବ । ଅଜମଧ୍ୟ ଜଳସେଚନର ସୁବିଧା ଦୃଷ୍ଟିରୁ ନିକଟରେ ପୋଖରୀ ବା କୂଅର ସୁବନ୍ଦୋବସ୍ତ କର-ବାକୁ ହେବ । ଶିକ୍ଷକ ଓ ଛାତ୍ରମାନେ ମିଳିମିଶି ବଗିଚାରେ ବିଭିନ୍ନ

ରତ୍ତୁକୁପଯୋଗୀ ଫସଲ ଉତ୍ପାଦନ କରିବା ସାଥେ ସାଥେ ବିଦ୍ୟାଳୟର ଖାଦ୍ୟାଭାବ ମେଣ୍ଟନ କରି ପାରିବେ । ସମବାୟ-ଗୃହର ଉପଯୋଗିତା ବିଦ୍ୟାଳୟର କୃଷିକ୍ଷେତ୍ରରେ ପରୀକ୍ଷା ଓ ପ୍ରୟୋଗ ଦ୍ୱାରା ସ୍ଥିର କରାଯିବା ଉଚିତ ।

**ଶିଳ୍ପ**—ଦେଶର ଆର୍ଥିକ ବିକାଶ ମୁଖ୍ୟତଃ ଶିଳ୍ପୋନ୍ନତି ଉପରେ ନିର୍ଭର କରେ । ତେଣୁ ପ୍ରତ୍ୟେକ ବିଦ୍ୟାଳୟରେ ଶିଳ୍ପଶିକ୍ଷାର ସୁବ୍ୟବସ୍ଥା କରାଯିବା ଉଚିତ । ଏଥିପାଇଁ କପାଗୃହ ଅଞ୍ଚଳରେ କପା ଗୃହ କରି ସୂତାକଟାର ପ୍ରୟୋଗ କରାଯାଇପାରେ । ଅନ୍ୟାନ୍ୟ ସ୍ଥାନରେ ସ୍ଥାନୀୟ ଶିଳ୍ପ (Locae Craft) ଉପରେ ବିଶେଷ ଗୁରୁତ୍ୱ ଦେବାକୁ ହେବ । ଏଥିପାଇଁ ପ୍ରତ୍ୟେକ ବିଦ୍ୟାଳୟରେ କାର୍ଯ୍ୟାଳୟର (Work-shop) ଉତ୍ତମ ବ୍ୟବସ୍ଥା କରାଯିବା ଉଚିତ । ଉଦାହରଣ ସ୍ୱରୂପ କାଠକାମ ଓ ତନ୍ତକାମ ପାଇଁ ବିଦ୍ୟାଳୟରେ ବଢ଼େଇଶାଳ ଓ ତନ୍ତଶାଳ ପ୍ରତିଷ୍ଠା କରିବାକୁ ହେବ । ଉପକରଣ ଆଦିର ସଂରକ୍ଷଣ ପାଇଁ ଏକ ସ୍ୱତନ୍ତ୍ର 'ସରଂଜାମ—କୋଠରୀ'ର ବ୍ୟବସ୍ଥା ମଧ୍ୟ କରାଯାଇପାରେ । କିନ୍ତୁ ଶିଳ୍ପ—ନିର୍ବାଚନ ପୂର୍ବରୁ କଞ୍ଚାମାଲର ନିୟମିତ ଯୋଗାଣ, ଶିଳ୍ପ ଦ୍ରବ୍ୟର ବିକ୍ରୟ ବ୍ୟବସ୍ଥା, କାର୍ଯ୍ୟ ପ୍ରକ୍ରିୟାର ଶିକ୍ଷଣୀୟ ମୂଲ୍ୟ ଓ ଏହା ଶିଳ୍ପ ଶୋଷଣହୀନ କି ନୁହେଁ ତାହା ଭଲ ଭାବରେ ବିଚାର କରି ଦେଖିବାକୁ ହେବ । ପଙ୍ଖା, ଝାଡ଼ୁ, ଆସନ, ରସି, ସାବୁନ୍ ପ୍ରଭୃତି ସାଧାରଣ ବ୍ୟବହାର୍ଯ୍ୟ ଦ୍ରବ୍ୟର ନିର୍ମାଣ ଉପରେ ମଧ୍ୟ ବିଶେଷ ଗୁରୁତ୍ୱ ଦେବାକୁ ହେବ ।

**ପଶୁ ପକ୍ଷୀ ପାଳନ**—ଯଦି ସମ୍ଭବ ହୁଏ, ଗୃହ ବାସ ସହିତ ବିଦ୍ୟାଳୟରେ ପଶୁପକ୍ଷୀ ପାଳନ ଉପରେ ମଧ୍ୟ ବିଶେଷ ଗୁରୁତ୍ୱ ଦେବାକୁ ହେବ । ଗୋ ଚାରଣ ଓ ଅନ୍ୟାନ୍ୟ ସୁବିଧା ଥିଲେ

ସ୍ୱାବଲମ୍ବନ ହାସଲ ଦୃଷ୍ଟିରୁ ଏହା ଏକ ଅତି ଲାଭଦାୟକ ପନ୍ଥା । ଗୋ ମହିଷାଦି ପଶୁ ପାଳନ, କୁକୁଡ଼ା ଚାଷ, ମହୁଚାଷ, ମାଛଚାଷ, ଏଣ୍ଡି ଓ ଟସର ଚାଷ ଇତ୍ୟାଦି ଏଥି ଉଦ୍ଦେଶ୍ୟରେ ବିଦ୍ୟାଳୟର ପରିସ୍ଥିତି ଓ ଅନୁକୂଳ ଅବସ୍ଥା ଦେଖି ଉଦ୍ୟୋଗ କରାଯାଇପାରେ । ଛାତ୍ରମାନେ ଭାଗ ଭାଗ ହୋଇ ଉପରୋକ୍ତ ଯେ କୌଣସି ଗୋଟିଏ ବା ଦୁଇଟି ଚାଷର ପୂର୍ଣ୍ଣ ଦାୟିତ୍ୱ ବହନକରିବେ ଏବଂ ନିଜର ଅନୁଭୂତି ଅଭିଜ୍ଞତାର ବିବରଣୀ ଯଥାମତ ରଖିବେ । ଏହା ଜରିଆରେ ଛାତ୍ରମାନଙ୍କୁ ଅତି ପ୍ରାକୃତିକ ପ୍ରଣାଳୀରେ ପ୍ରାଣୀ-ବିଜ୍ଞାନ ଶିକ୍ଷା ଦିଆଯାଇପାରେ ।

**ସମବାୟ ଭଣ୍ଡାର**—ବିଦ୍ୟାଳୟର ସାଧାରଣ କିଣାବିକା କାରବାର ଯେତେଦୂର ସମ୍ଭବ ସମବାୟ ଭଣ୍ଡାର ଜରିଆରେ ସମ୍ପନ୍ନ ହେବା ଉଚିତ । ଛାତ୍ର-ପ୍ରତିନିଧିମାନେ ନିର୍ବାଚିତ ହୋଇ ଏହି ଭଣ୍ଡାରର ପରିଚାଳନା ଦାୟିତ୍ୱ ବହନ କରିବେ । ଆୟବ୍ୟୟର ଯଥାମତ ହିସାବ ରଖାଯିବ ଓ ସେ ସବୁ ମାସକୁ ମାସ ଯାଞ୍ଚ କରାଯିବ । ଏହା ଫଳରେ ସମବାୟ ଆନ୍ଦୋଳନ ସମ୍ପର୍କରେ ଛାତ୍ରମାନେ ପ୍ରତ୍ୟକ୍ଷ ଭାବରେ ନାନାବିଧ ଶିକ୍ଷାଲାଭ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ମଧ୍ୟରେ ଏକତାର ବନ୍ଧନ ସୁଦୃଢ଼ ହେବ । ମଝିରେ ମଝିରେ ସମସ୍ତ ବିଦ୍ୟାଳୟର ଛାତ୍ରମାନେ ଏକତ୍ର ହୋଇ ସମବାୟ ଭଣ୍ଡାରର ପ୍ରଗତି ଓ ବିଭିନ୍ନ କାର୍ଯ୍ୟକାରୀ ଯୋଜନା ସମ୍ପର୍କରେ ପ୍ରସ୍ତାବ ଦେଇପାରନ୍ତି । ବର୍ଷ ଶେଷରେ ଲାଭାଂଶ-ପରିମାଣ କିପରି ବ୍ୟୟିତ ହେବ, ତାହା ଏହି ସମୂହ ବୈଠକରେହିଁ ସ୍ଥିର କରାଯିବ । ଯଥାଯଥ ଭାବରେ ସଂଗଠନ କରାଯାଇପାରିଲେ ସମବାୟ ଭଣ୍ଡାର ବିଦ୍ୟାଳୟର ସ୍ୱାବଲମ୍ବନ-ହାସଲ ଦିଗରେ ଯେ ବିଶେଷ ସହାୟକ ହେବ—ଏଥିରେ ଅତିରଂଜନ ନାହିଁ ।

ପୁସ୍ତକାଳୟ—ମୌଳିକ ଶିକ୍ଷାରେ କୌଣସି ନିର୍ଦ୍ଧାରିତ ପୁସ୍ତକର ସ୍ଥାନ ନାହିଁ । ପରିସ୍ଥିତି ଓ ପ୍ରୟୋଜନ ଅନୁସାରେ ଗୁରୁଜୀ ପୁସ୍ତକାଳୟର ଯେ କୌଣସି ପୁସ୍ତକର ଅଂଶ ନେଇ ଶିକ୍ଷାଦାନ ଦେଇପାରନ୍ତି । ଏହି ଉଦ୍ଦେଶ୍ୟରେ ପ୍ରତ୍ୟେକ ଶ୍ରେଣୀ ଉପଯୋଗୀ ସ୍ୱତନ୍ତ୍ର 'ଶ୍ରେଣୀ-ପୁସ୍ତକାଳୟ'ର ସୁବ୍ୟବସ୍ଥା କରିବାକୁହେବ । ଛାତ୍ରମାନେ ପୁସ୍ତକାଳୟର ସଂରକ୍ଷଣ ଓ ଅଭିବୃଦ୍ଧିର ଦାୟିତ୍ୱ ବହନ କରିବେ । ସବୁ କ୍ଷେତ୍ରରେ ଗୁରୁଜୀ କେବଳ ପଥ-ପ୍ରଦର୍ଶକ ହୋଇ ରହିବେ । ଏହି ଉଦ୍ଦେଶ୍ୟରେ ଶ୍ରେଣୀ ମାନ ଓ ପ୍ରୟୋଜନ ଅନୁସାରେ,ବିଭିନ୍ନ ପୁସ୍ତକ ସଂଗୃହୀତ ହୋଇ ରହିବ । ପୁସ୍ତକାଳୟର ବହିଗୁଡ଼ିକ ଗଳ୍ପ, ଉପନ୍ୟାସ, ନାଟକ, କାବ୍ୟ, କବିତା ଆଦି କ୍ରମରେ ସୁସଜ୍ଜିତ ହୋଇ ରହିବ । ପୁସ୍ତକାଳୟରେ ଥିବାବେଳେ ବହିଗୁଡ଼ିକର କ୍ରମିକ ସଂଖ୍ୟା ପ୍ରତି ମଧ୍ୟ ବିଶେଷ ଦୃଷ୍ଟି ଦେବାକୁ ହେବ । ଛାତ୍ରମାନଙ୍କଠାରୁ ସେମାନଙ୍କ ପଢ଼ା ବହି ବର୍ଷ ଶେଷରେ ସଂଗୃହୀତ ହୋଇ ପାରିଲେ 'ଶ୍ରେଣୀ-ପୁସ୍ତକାଳୟ' ପାଇଁ ଆଉ ପୁସ୍ତକର ଅଭାବ ରହିବ ନାହିଁ ।

ପଠନାଳୟ—ମୌଳିକ ଶିକ୍ଷାରେ ସ୍ୱତନ୍ତ୍ର ସମ୍ବାଦପତ୍ର ପାଠ ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି । ସମ୍ବାଦପତ୍ର ଜରିଆରେ ଛାତ୍ରମାନଙ୍କୁ ଅତି ସହଜରେ ବିଭିନ୍ନ ବିଷୟଗତ ଶିକ୍ଷା ଦିଆଯାଇ ପାରେ । ଏହି ଉଦ୍ଦେଶ୍ୟରେ ବିଦ୍ୟାଳୟରେ ସ୍ୱତନ୍ତ୍ର ପଠନାଗାର ( Reading Room ) ରହିବ ଏବଂ ନାନାବିଧ ଦୈନିକ ଓ ମାସିକ ପତ୍ର ପତ୍ରିକା ଏଠାରେ ରଖାଯିବ । ବିଦ୍ୟାଳୟ ତରଫରୁ ମାସିକ ସମ୍ବାଦପତ୍ର ଓ 'ମାଗାଜିନ୍' ମଧ୍ୟ ପ୍ରକାଶିତ ହୋଇ ଏଠାରେ ସ୍ଥାନ ପାଇବା ଆବଶ୍ୟକ ।

**ଶିଶୁ-ସଂଗ୍ରହାଳୟ**—ସଂଗ୍ରହ ଶିଶୁମାନଙ୍କର ଏକ ସହଜାତ ପ୍ରବୃତ୍ତି । ଏହି ପ୍ରବୃତ୍ତିର ଯଥାଯଥ ପରିଚାଳନା ଅଭାବରେ ଶିଶୁ ଚୋରିକରିବାକୁ ଶିଖେ । ତେଣୁ ଶିଶୁମାନଙ୍କ ସଂଗ୍ରହ-ପ୍ରବୃତ୍ତିକୁ ସୁସଂଗଠିତ କରି ସେମାନଙ୍କ ଦ୍ୱାରା ସଂଗୃହୀତ ବିଭିନ୍ନ ଦ୍ରବ୍ୟର ଏକ ସଂଗ୍ରହାଳୟ ବିଦ୍ୟାଳୟରେ ପ୍ରତିଷ୍ଠା କରାଯାଇ ପାରିଲେ ଶିକ୍ଷାଦାନ କାର୍ଯ୍ୟରେ ଏହାର ବିଶେଷ ଉପଯୋଗ କରାଯାଇ ପାରନ୍ତା । କୌଣସି ଏକ ପ୍ରଶସ୍ତ କୋଠରୀରେ ବିଭିନ୍ନ ଦ୍ରବ୍ୟର ଶ୍ରେଣୀ-ବିଭାଗ କରି ସେ ସବୁ ସ୍ୱତନ୍ତ୍ର ଓ ସୁସଜ୍ଜିତ ଭାବରେ ସାଇତି ରଖିବାକୁ ହେବ । ସଂଗୃହୀତ ଦ୍ରବ୍ୟର ତଳେ ସଂଗ୍ରାହକର ନାମ ଓ ଶ୍ରେଣୀ ମଧ୍ୟ ଉଲ୍ଲେଖ କରିବାକୁ ହେବ । ଏହା ଫଳରେ ବିଭିନ୍ନ ଦ୍ରବ୍ୟ ସଂଗ୍ରହକରି ରଖିବାରେ ଶିଶୁମାନେ ଉତ୍ସାହିତ ହେବେ । ପଦାର୍ଥ ସାହାଯ୍ୟରେ ଶିକ୍ଷାଦାନ କାର୍ଯ୍ୟ ମଧ୍ୟ ଏହି ଉପାୟରେ ସୁନ୍ଦର ଭାବରେ ସମ୍ପାଦନ କରାଯାଇ ପାରେ ।

ସଂଗ୍ରାହାଳୟରେ ବିଭିନ୍ନ ଶସ୍ୟ, ମାଟି, ପଥର, ଧାତୁ, ମୁଦ୍ରା, ତୈଳଶସ୍ୟ, ବସ୍ତ୍ରଜାତ ଦ୍ରବ୍ୟ, ବିଭିନ୍ନ ପର ଓ ପକ୍ଷୀ, ଶିଙ୍ଗ, ହାଡ଼ ଓ କଙ୍କାଳ, ପଶୁ ପକ୍ଷୀର ବସା, ପ୍ରାଚୀନ ଅସ୍ତ୍ର ଶସ୍ତ୍ର, ଓ ବ୍ୟବହାର୍ଯ୍ୟ ଦ୍ରବ୍ୟ, ଜଙ୍ଗଲ ଓ ସମୁଦ୍ରଜାତ ଦ୍ରବ୍ୟ ଇତ୍ୟାଦି ସ୍ଥାନ ପାଇପାରେ ।

**ପାଠଚକ୍ର**—ବିଭିନ୍ନ ବିଷୟରେ ଆଲୋଚନା, ଯୁକ୍ତିତର୍କ ଓ ଭାବର ଆଦାନ ପ୍ରଦାନ ପାଇଁ ଛାତ୍ରମାନେ ପର୍ଯ୍ୟାପ୍ତ ଅବକାଶ ପାଇବା ଉଚିତ । ନିମ୍ନ ମାଧ୍ୟମିକ ଓ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ପାଇଁ ସ୍ୱତନ୍ତ୍ର ପାଠଚକ୍ରର ବ୍ୟବସ୍ଥା କରିବାକୁ ହେବ । ପାଠଚକ୍ରର ପରିଚାଳନା ଭାର ଛାତ୍ରମାନେ ନିଜେ ନିଜେ ବହନ କରିବେ । ନିର୍ଦ୍ଧାରିତ ବିଷୟବସ୍ତୁ ଉପରେ ମାତୃଭାଷାରେ ଆଲୋଚନା କରିବା ପାଇଁ ଛାତ୍ର-ମାନେ ପୂର୍ବରୁ ପ୍ରସ୍ତୁତ ହେବେ । ବିଭିନ୍ନ ପ୍ରକାର ବହିପତ୍ରର

ସାହାଯ୍ୟ ନେଇ ନିଜର ମତକୁ ଦୃଢ଼ଭାବରେ ଯେପରି ଉପସ୍ଥାପିତ କରାଯାଇପାରେ, ସେଥିପ୍ରତି ଛାତ୍ରମାନଙ୍କୁ ଉତ୍ସାହିତ କରିବାକୁ ହେବ । ଅନୁଷ୍ଠାନୁଭୂତ ପାଇଁ ମଝିରେ ମଝିରେ ବ୍ୟଙ୍ଗ ବିଧାନ ସଭା (Mock Assembly ) ବ୍ୟଙ୍ଗ ବିଚାର (Mock Trial) ଆଦିର ଅନୁଷ୍ଠାନ ମଧ୍ୟ କରାଯାଇପାରେ । ସାଧାରଣତଃ ଦଳଗତ ଆଲୋଚନା ପାଠଚକ୍ର ବ୍ୟବସ୍ଥାରେ ଉଚ୍ଚସ୍ଥାନ ଲାଭକରେ ।

କ୍ରୀଡ଼ା କୌତୁକ—ବିଦ୍ୟାଳୟର ଜୀବନକୁ ସରସ ଓ ଆନନ୍ଦ ମୁଖରିତ କରିବା ଉଦ୍ଦେଶ୍ୟରେ କ୍ରୀଡ଼ାକୌତୁକକୁ ସମ୍ଯକରୂପେ ଉତ୍ସାହିତ କରାଯିବ । କିନ୍ତୁ ଦେହଗଠନ ସ୍ୱାସ୍ଥ୍ୟ ହାନୀ କର କ୍ରୀଡ଼ା କୌତୁକକୁ ଆଦୌ ପ୍ରଶ୍ରୟ ଦିଆଯିବ ନାହିଁ । ବିନା ବ୍ୟୟରେ ଅଙ୍ଗଚାଳନା ସଙ୍ଗେ ସଙ୍ଗେ ଯେପରି ଆନନ୍ଦାନୁଭୂତ ଲାଭ କରାଯାଇ ପାରିବ— ସେହି ଦୃଷ୍ଟିରୁ ବିଦ୍ୟାଳୟରେ କେତେକ ଉପଯୋଗୀ ଖେଳକୁ ଉତ୍ସାହିତ କରାଯିବ । କବାଡ଼ି, ଅଦନ, କୁସ୍ତି, କସରତ, ସୂର୍ଯ୍ୟ-ନମସ୍କାର, ଦଣ୍ଡ ବୈଠକ ଇତ୍ୟାଦିର ପ୍ରୟୋଗ କରାଯାଇ ପାରିଲେ ସବୁଠାରୁ ଭଲ । ମଝିରେ ମଝିରେ କ୍ରୀଡ଼ା କୌତୁକରେ ଦଳଗତ ପ୍ରତିଯୋଗିତାକୁ ମଧ୍ୟ ଉତ୍ସାହିତ କରାଯାଇ ପାରେ । କିନ୍ତୁ ଏହା ପ୍ରତିଯୋଗିତା ଯେପରି ଉତ୍କଟ ରୂପ ଧାରଣ ନକରେ, ସେଥିପ୍ରତି ବିଶେଷ ସାବଧାନ ହେବାକୁ ପଡ଼ିବ । ବିଦ୍ୟାଳୟର ସ୍ୱତନ୍ତ୍ର ଖେଳପଡ଼ିଆ ରହିବା ନିତାନ୍ତ ଆବଶ୍ୟକ ।

ମନୋରଂଜନ—ଶିଶୁ ସ୍ୱଭାବତଃ ଗୀତ ନୃତ୍ୟ ପ୍ରିୟ । ଗାଇବା, ନାଚିବା ଓ ନାନାବିଧ ଅଭିନୟ କରିବାକୁ ସେ ପ୍ରାଣଭରି ଭଲପାଏ । କିନ୍ତୁ ଦୁର୍ଭାଗ୍ୟର ବିଷୟ ଯେ ଆମ ଦେଶର ସମାଜ ତଥା ଶିକ୍ଷା-ବ୍ୟବସ୍ଥାରେ ମନୋରଂଜନକୁ ନାନା ଭାବରେ ନିରୁ- ତ୍ସାହିତ କରାଯାଉଛି ସଙ୍ଗୀତକୁ ଶିକ୍ଷାର ଏକ ପ୍ରଧାନ ଅଙ୍ଗ

ବୋଲି ମାନି ନେବାକୁ ଆଜି ମଧ୍ୟ ଅନେକେ ପ୍ରସ୍ତୁତ ନୁହନ୍ତି । କିନ୍ତୁ ବାସ୍ତବରେ ମନୋରଂଜନ ହିଁ ଶିଶୁ ଶିକ୍ଷାର ମୁଖ୍ୟ ମାଧ୍ୟମ ହେବା ଆବଶ୍ୟକ । ପ୍ରଗତି ଶୀଳ ଦେଶମାନଙ୍କରେ ଏହାର ଉପଯୋଗିତାକୁ ସମସ୍ତେ ଉପଲବ୍ଧି କଲେଣି ।

ସଂଗୀତ ଏକ ଶ୍ରେଣୀକଳା । ଶିଶୁ ସ୍ୱଭାବତଃ ଏହି ସ୍ୱର୍ଗୀୟ କଳାର ଅଧିକାରୀ । କିନ୍ତୁ ଉତ୍ସାହ ଓ ଅନୁକୂଳ ପରିସ୍ଥିତିର ଅଭାବରେ ଶିଶୁମାନଙ୍କରେ ପ୍ରଚ୍ଛନ୍ନ ଭାବରେ ଥିବା ଏହି ଶକ୍ତିର ଅଯଥା ଅପଚୟ ଘଟେ । ତେଣୁ ଶିକ୍ଷାରେ ସଂଗୀତ ଉଚ୍ଚସ୍ଥାନ ଲାଭକଲେ ଓ ଶିଶୁମାନେ ଆବଶ୍ୟକ ପ୍ରେରଣା ପାଇଲେ ସମାଜରେ ଆପେ ଆପେ ଏହି ଲଳିତ କଳାର ଉତ୍କର୍ଷ ସାଧନ ସମ୍ଭବ ହୁଅନ୍ତା । ଆଜି ମଧ୍ୟ ଏହା ଅନୁଭୂତ ସିଦ୍ଧ ଯେ ଶିଶୁମାନେ ଗୀତନୃତ୍ୟ ଛଳରେ କୌଣସି ବିଷୟକୁ ଯେପରି ମନେ ରଖିପାରନ୍ତି କେବଳ ପାଠ ପଢ଼ି ସେପରି ପାରନ୍ତି ନାହିଁ । ତେଣୁ ବିଦ୍ୟାଳୟରେ ସ୍ୱତନ୍ତ୍ର ସଂଗୀତ-ଭବନ ଓ ବାଦ୍ୟଯନ୍ତ୍ର ଆଦିର ବ୍ୟବସ୍ଥା ରହିବା ଆବଶ୍ୟକ ।

ମୌଳିକ ଶିକ୍ଷାର ସଫଳତା ପାଇଁ ଆବାସିକ ବିଦ୍ୟାଳୟର (Residential school )ସୁବ୍ୟବସ୍ଥା ହେବା ଦରକାର । ଛାତ୍ରମାନେ ଏହି ବିଦ୍ୟାଳୟ ରୂପକ ଗୃହରେ ବାସକରି ଭବିଷ୍ୟତ ସମାଜ ପାଇଁ ଆବଶ୍ୟକ ଶିକ୍ଷା ଗ୍ରହଣ କରିବେ । ଏଠାରେ ଶ୍ରମ ଓ ଶିକ୍ଷା ଉଭୟ ତାଳକୁ ତାଳ ପକାଇ ଅଗ୍ରଗତି କରିବ । ଛାତ୍ରମାନେ ସମ୍ପୂର୍ଣ୍ଣ ମାନବ ହେବା ଦୃଷ୍ଟିରୁ ହିଁ ସର୍ବାଙ୍ଗୀନ ଶିକ୍ଷା ଲାଭକରିବା ଆବଶ୍ୟକ ।

# ସମୟ ଓ କାର୍ଯ୍ୟ ନିର୍ଘଣ୍ଟ ।

ମୌଳିକ ବିଦ୍ୟାଳୟରେ କୌଣସି ଧରାବନ୍ଧା ସମୟ ନିର୍ଘଣ୍ଟ ନ ଥାଏ । ପାରିପାର୍ଶ୍ୱିକ ପରିସ୍ଥିତି, ଦୈନନ୍ଦିନ ଘଟଣା, ଛାତ୍ରମାନଙ୍କର ଆଗ୍ରହ ଅଭିରୁଚି ଓ ମାନସିକ ଅବସ୍ଥା ଅନୁସାରେ ହିଁ ଗୁରୁଜୀ ଛାତ୍ରମାନଙ୍କୁ ବିଭିନ୍ନ ବିଷୟଗତ ଶିକ୍ଷା ଦିଅନ୍ତି । ମୌଳିକ ଶିକ୍ଷା ଶିଶୁ-କେନ୍ଦ୍ରିକ; ବିଷୟ-କେନ୍ଦ୍ରିକ ନୁହେଁ । କିନ୍ତୁ ଏଥିରେ ଏକ ବିପଦ ରହିଛି । ଛାତ୍ରମାନଙ୍କର ଆଗ୍ରହ ଅଭିରୁଚି ଓ ଶକ୍ତି ସାମର୍ଥ୍ୟ ଅନୁସାରେ ଶିକ୍ଷା ଦେବାର ନୀତି ଗୃହୀତ ହୋଇଥିବାରୁ ସମସ୍ତ ବିଷୟଗତ ଶିକ୍ଷା ଉପରେ ସମାନ ଗୁରୁତ୍ୱ ଦିଆଯାଇ ନ ପାରିବାର ଆଶଙ୍କା ରହିଛି । ଏହାଫଳରେ କୌଣସି କୌଣସି ବିଷୟ ବାଦ୍ ପଡ଼ିଯିବାର ମଧ୍ୟ ଢେର ଆଶଙ୍କା ରହିଛି । ଜଣେ ଶିକ୍ଷକ ଯଦି ଚିତ୍ରକଳା ବା ସଙ୍ଗୀତ ବିଦ୍ୟାରେ ପାରଙ୍ଗମ ନୁହନ୍ତି, ତେବେ ଛାତ୍ରମାନେ ମଧ୍ୟ ସେହି ସେହି ବିଷୟରେ ନିଶ୍ଚୟ ଦୁର୍ବଳ ହୋଇଉଠିବେ । ଅବଶ୍ୟ ସବୁ ଶିକ୍ଷକ ସମସ୍ତ ବିଷୟରେ ସମାନ ଭାବରେ ଦକ୍ଷ ହୋଇଥିବା ଆଶା କରାଯାଇ ନ ପାରେ । ଏଥିପାଇଁ ଶ୍ରେଣୀ

ଶିକ୍ଷକ ଅନ୍ୟମାନଙ୍କର ସାହାଯ୍ୟ ନେବେ । ଉଚ୍ଚ ଶ୍ରେଣୀମାନଙ୍କରେ ବିଭିନ୍ନ ବିଷୟରେ ଦକ୍ଷ ଓ ଅଭିଜ୍ଞ ଶିକ୍ଷକମାନଙ୍କୁ ସ୍ୱତନ୍ତ୍ର ଭାବରେ ନିଯୁକ୍ତକରାଯିବା ଉଚିତ ।

ଉପର ସୂଚିତ ଅସୁବିଧାର ନିରାକରଣ ପାଇଁ ଗୁରୁଜୀ ଏକ ହାରାହାରି ଦୈନିକ ସମୟ-ନିର୍ଘଣ୍ଟକୁ ମନ ମଧ୍ୟରେ ସ୍ଥାନ ଦେଇ ତଦନୁସାରେ କାର୍ଯ୍ୟ କ୍ଷେତ୍ରରେ ଅଗ୍ରସର ହେବେ । ଏହି ପ୍ରକାର ବ୍ୟବସ୍ଥା କେବଳ ନିମ୍ନ ମୌଳିକ ବିଦ୍ୟାଳୟ ମାନଙ୍କରେ (ପ୍ରଥମରୁ ପଞ୍ଚମ ଶ୍ରେଣୀ ବିଶିଷ୍ଟ ବିଦ୍ୟାଳୟ) ଅନୁସୃତ ହେବା ଉଚିତ । ଉଚ୍ଚମାଧ୍ୟମିକ ବିଦ୍ୟାଳୟର ଉପର ଶ୍ରେଣୀମାନଙ୍କରେ ଶ୍ରେଣୀ-ଶିକ୍ଷକ-ବ୍ୟବସ୍ଥା ବଦଳରେ ବିଷୟ ଶିକ୍ଷକ-ବ୍ୟବସ୍ଥାର ପ୍ରଚଳନ ନ କଲେ ଚଳିବ ନାହିଁ ।

ଶ୍ରେଣୀ-ଶିକ୍ଷକ- ବ୍ୟବସ୍ଥା ଅନୁସାରେ ନିମ୍ନଲିଖିତ ଦୈନିକ ସମୟ ନିର୍ଘଣ୍ଟ ମୋଟା ମୋଟି ଅନୁସୃତ ହୋଇପାରେ । ଅବଶ୍ୟ ଆବଶ୍ୟକତା ଓ ପରିସ୍ଥିତି ଅନୁସାରେ ଏହି ସମୟ ନିର୍ଘଣ୍ଟର ପରିବର୍ତ୍ତନ କରିବା ଗୁରୁଜୀଙ୍କର ଇଚ୍ଛାଧୀନ ।

## ହାରାହାରି ଦୈନିକ ସମୟ ନିର୍ଘଣ୍ଟ

୧. ସଫାଇ ଓ ସ୍ୱାସ୍ଥ୍ୟ— ଘ ୦ । ୩୦ ମି

୨. ପ୍ରାର୍ଥନା, ଗ୍ରାମ-ସମ୍ବାଦ-ସଂଗ୍ରହ ଓ ସମ୍ବାଦ ପତ୍ର ପାଠ— ଘ ୦ । ୩୦ ମି

୩. କୃଷି ଓ ହସ୍ତଶିଳ୍ପ— ଘ ୧ । ୦ ମି

୪. ଶିଳ୍ପବିଦ୍ୟା (କାଠକାମ, ବୁଣାଇ, ସୂତାକଟା ଇତ୍ୟାଦି)— ଘ ୧ । ୦ ମି

୫. ଭାଷା ଓ ସାହିତ୍ୟ (ମାତୃଭାଷା ଓ ରାଷ୍ଟ୍ରଭାଷା)— ଘ ୧ । ୦ ମି

୬. ଗଣିତ— ଘ० । ୪୫ ମି.
୭. ବିଜ୍ଞାନ— ଘ० । ୩୦ ମି.
୮. ସମାଜ-ଶାସ୍ତ୍ର— ଘ० । ୩୦ ମି.
୯. ଚିତ୍ରକଳା ଓ ସଂଗୀତ— ଘ० । ୪୫ ମି.

ମୋଟ୍ ଘ ୬ । ୩୦ ମିନଟ୍
(ଛ' ଘଣ୍ଟା ତିରିଶ ମିନିଟ ମାତ୍ର)

ମୌଳିକ ବିଦ୍ୟାଳୟରେ କାମଦାମର ବ୍ୟବସ୍ଥା ଥିବାରୁ ଦିନର ଉଭୟବେଳା ସ୍କୁଲକାର୍ଯ୍ୟ କରାଯାଏ । ସାଧାରଣତଃ ସକାଳ ସାଡେ ଛ'ଟାରୁ ଦିନ ଏଗାରଟା ଓ ଅପରବେଳା ସାଢ଼େ ଦୁଇଟାରୁ ସାଢ଼େ ଚାରିଟା ପର୍ଯ୍ୟନ୍ତ ସ୍କୁଲ କାର୍ଯ୍ୟ କରାଯାଏ । ଏକାଦିକ୍ରମେ ପିଲାମାନଙ୍କୁ ସାଢ଼େ ଛ' ଘଣ୍ଟା କୌଣସି ଗୋଟିଏ କାର୍ଯ୍ୟରେ ଲଗାଯାଇ ଅବିଚ୍ଛିନ୍ନ ରଖିବା କେବେ ସମ୍ଭବ ନୁହେଁ । ଅଜ ମଧ୍ୟ ସାଧାରଣ ବିଦ୍ୟାଳୟ ପରି ଏଠାରେ ମଧ୍ୟାହ୍ନରେ (ସାଢ଼େ ଦଶରୁ ସାଢ଼େ ଚାରି) ସ୍କୁଲ କାର୍ଯ୍ୟ କରାଗଲେ ସଫାଇ, ବଗିଚାକାମ ପ୍ରଭୃତି ବାଧାପ୍ରାପ୍ତ ହେବ । ଖାଇସାରି ଅସି ଛାତ୍ରମାନେ କାମଦାମ କରିବାକୁ ଆଦୌ ସମର୍ଥ ହୁଅନ୍ତି ନାହିଁ । ଅପରାହ୍ନରେ ମଧ୍ୟ ସେମାନେ ଭୋକିଲା ଓ କ୍ଳାନ୍ତ ହୋଇ ପଡ଼ିଥିବାରୁ କାମଦାମରେ ସେମାନଙ୍କୁ ନିଯୁକ୍ତ କରିବା ସମ୍ଭବ ନୁହେଁ ।

ଛାତ୍ରମାନେ ସକାଳୁ ସାଢ଼େ ଛ'ଟାରେ ବିଦ୍ୟାଳୟରେ ଆସି ଉପସ୍ଥିତ ହେବେ । ତା'ପରେ ସଫାଇ ମନ୍ତ୍ରୀଙ୍କର ସାପ୍ତାହିକ ପାଳିବଣ୍ଟନ ଅନୁସାରେ ସମସ୍ତେ ଅଧଘଣ୍ଟା ସମୟ ସଫାଇ କାମରେ ନିଯୁକ୍ତ ରହିବେ । ବିଦ୍ୟାଳୟ ହତାକୁ ପରିଷ୍କାର ପରିଚ୍ଛନ୍ନ ରଖିବା, ମୂତ୍ରଖାନା ଓ ପାଇଖାନା ସଫାକରିବା, ସାରଖାତରେ ଅଳିଆ ଅବର୍ଜନା ଓ ଗୋବରପାଣି ପକାଇବା, ଭୂଟପାଟ ସଫା ରଖିବା

ପିଇବା ପାଣିର ବ୍ୟବସ୍ଥା କରିବା, ସ୍ନାନାଗାର ତିଆରି କରିବା ଆଦି କାର୍ଯ୍ୟ ଉପରେ ଏହି ସମୟ ମଧ୍ୟରେ ଗୁରୁତ୍ୱ ଦିଆଯିବ ।

ସଫାଇ ପରେ ଛାତ୍ରମାନେ ଧୁଆଧୋଇ ହୋଇ ପ୍ରାର୍ଥନା ମଣ୍ଡପରେ ଏକତ୍ର ହେବେ । ସେଠାରେ ସମୂହ ଭାବରେ ପ୍ରାର୍ଥନା କରାଯିବ । ପ୍ରାର୍ଥନା ପରେ ଛାତ୍ରମାନଙ୍କର ବ୍ୟକ୍ତିଗତ ସଫାଇ ଓ ସ୍ୱାସ୍ଥ୍ୟ ସମ୍ପର୍କରେ ଦୃଷ୍ଟି ଦିଆଯିବ ଓ ସେମାନଙ୍କଠାରୁ ଗ୍ରାମ-ସମ୍ବାଦ ସଂଗ୍ରହ କରାଯାଇ ସଂକ୍ଷେପରେ ତାହାର ଆଲୋଚନା ହେବ । ଏହି ସମୟରେ ଯାହାର ଯାହା କିଛି କହିବାର ଥିବ, ତାହା ସମସ୍ତଙ୍କ ଆଗରେ ପ୍ରକାଶ କରିବାକୁ ଛାତ୍ରମାନଙ୍କୁ ସ୍ୱାଧୀନତା ଦିଆଯିବ । ତା'ପରେ କୌଣସି ନିରପେକ୍ଷ ସମ୍ବାଦପତ୍ର ପଢ଼ି ସେମାନଙ୍କୁ ଶୁଣାଇ ଦିଆଯିବ ଓ କିଛି ସନ୍ଦେହ ଥିଲେ ତାହା ମୋଚନ କରାଯିବ ।

ସାଢ଼େ ସାତଟାରୁ ଦଶଟା ପର୍ଯ୍ୟନ୍ତ ଗଣିତ, ବିଜ୍ଞାନ, ସାହିତ୍ୟ ଆଦି କଠିନ ବିଷୟ ସୁବିଧା ଅନୁସାରେ ଶିକ୍ଷା ଦିଆଯିବ । କାମ ଓ ପାଠ ମିଶା ମିଶି ହୋଇ ଶିକ୍ଷା ଦିଆଯିବା ଦ୍ୱାରା ଉଭୟ ଶାରୀରିକ ଓ ମାନସିକ ତୃପ୍ତି ସମ୍ଭବ ହେବ । ଏହା ଫଳରେ କୌଣସି ବିଷୟ ଆଉ ଛାତ୍ରମାନଙ୍କ ପ୍ରତି କ୍ଲାନ୍ତିକର ବୋଧ ହେବନାହିଁ । ଦଶ ଦଶଟାରୁ ଏଗାରଟା ପର୍ଯ୍ୟନ୍ତ ଧନ୍ଦା ଓ ଶିଳ୍ପକାର୍ଯ୍ୟ କରାଯିବ । ଏହି ସମୟ ମଧ୍ୟରେ ଅଧ ଘଣ୍ଟା ସୂତାକଟା କରାଯିବ । ଯେଉଁ ଛାତ୍ର ଯେଉଁ ଶିଳ୍ପଶିକ୍ଷା ପାଇଁ ଆଗ୍ରହୀ ଓ ଉପଯୁକ୍ତ ବିବେଚିତ ହେବେ, ପରିସ୍ଥିତି ଓ ଆର୍ଥିକ ସମ୍ବଳ ଅନୁସାରେ ବିଦ୍ୟାଳୟରେ ସେହି ସେହି ଶିଳ୍ପଶିକ୍ଷାର ବ୍ୟବସ୍ଥା କରାଯାଇପାରେ ।

ଅପରାହ୍ନ ସାଢ଼େ ଦୁଇଟାରୁ ସାଢ଼େ ତିନଟା ପର୍ଯ୍ୟନ୍ତ ସାମାଜିକ ଶିକ୍ଷା ଓ କଳାଶିକ୍ଷା ଉପରେ ଗୁରୁତ୍ୱ ଦିଆଯିବ ଏହି ସମୟ ମଧ୍ୟରେ

ସୁବିଧା ଦେଖି ସଂଗୀତ ଶିକ୍ଷା ମଧ୍ୟ ଦିଆଯିବ । ସାଢ଼େ ଭଜନାନ୍ତଙ୍କୁ ଦୃଷ୍ଟା ପର୍ଯ୍ୟନ୍ତ ବିଭିନ୍ନ ହାତ କାମ କରିବାରେ ଛାତ୍ରମାନଙ୍କୁ ନିଯୁକ୍ତ କରାଯିବ । ଝାଡ଼ୁ, ପଙ୍ଖା, ମଶିଣା, ରସି, ସାବୁନ୍ ଆଦି ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟର ନିର୍ମାଣ ଓ ସିଲାଇ ଉପରେ ବିଶେଷ ଗୁରୁତ୍ୱ ଦିଆଯିବ । ଏଥିପାଇଁ ସ୍ୱତନ୍ତ୍ର ଶିକ୍ଷକ ନିଯୁକ୍ତ ହୋଇ ପାରନ୍ତି ବା ଗ୍ରାମବାସୀମାନଙ୍କର ସାହାଯ୍ୟ ନିଆଯାଇପାରେ । ଦୃଷ୍ଟାରୁ ସାଢ଼େ ଦୃଷ୍ଟା ପର୍ଯ୍ୟନ୍ତ ଛାତ୍ରମାନେ ବଗିଚା-କାମରେ ନିଯୁକ୍ତ ହେବେ । କାର୍ଯ୍ୟବ୍ୟସ୍ତ ସମୟରେ ସକାଳ ବେଳା ଆଉ ଅଧଘଣ୍ଟା ଅଧିକ ସମୟ ଅନ୍ୟ ବିଷୟରୁ କାଟି କୃଷି ପାଇଁ ଦିଆଯାଇ-ପାରେ ।

ଫୁଲ ଫଳରେ ସୁଶୋଭିତ ଏକ ବଗିଚାସଂଲଗ୍ନ ବିଦ୍ୟାଳୟ ଛାତ୍ରମାନଙ୍କୁ ବିଶେଷ ଆକର୍ଷଣ କରେ । ବିଦ୍ୟାଳୟର କୋଠରୀ-ଗୁଡ଼ିକ ମଧ୍ୟ ବିଭିନ୍ନ ଛବି, ଚିତ୍ର ଓ ମାନଚିତ୍ର ଆଦିରେ ସୁସଜ୍ଜିତ ହେବା ଆବଶ୍ୟକ । ଗୁରୁଜୀମାନଙ୍କର ମଧୁର ବ୍ୟବହାର ଓ ମିଷ୍ଟାଳାପ ପର୍ବପର୍ବାଣି ପାଳନ, ମଝିରେ ମଝିରେ ଗୀତ ନୃତ୍ୟାଭିନୟ ଆଦି ମନୋରଂଜନର ବ୍ୟବସ୍ଥା, ବନଭୋଜିର ଆୟୋଜନ ବିଦ୍ୟାଳୟ-ଜୀବନକୁ ସରସ ଓ ହର୍ଷମୁଖର କରି ତୋଳେ । ଏହାଦ୍ୱାରା ଛାତ୍ର-ମାନେ ଆପେ ଆପେ ବିଦ୍ୟାଳୟ ପ୍ରତି ଆକୃଷ୍ଟ ହୁଅନ୍ତି । ଏହି ଉପକରଣ ଶିକ୍ଷା-ବ୍ୟବସ୍ଥାରେ ଛାତ୍ରାପସ୍ଥାନ-ସମସ୍ୟା କ୍ୱଚିତ୍ ଦେଖା ଦେଇଥାଏ ।

ବିଦ୍ୟାଳୟରେ ଶ୍ରେଣୀ-ଶିକ୍ଷକ ନା ବିଷୟ-ଶିକ୍ଷକ ବ୍ୟବସ୍ଥା ଅନୁସୃତ ହେବା ଭଲ, ଏହା ଏକ ବିବାଦମାନ ପ୍ରଶ୍ନ । ଉଭୟ ବ୍ୟବସ୍ଥାର ଭଲ ମନ୍ଦ ନିମ୍ନରେ ଆଲୋଚନା କରାଗଲା ।

୧ । ବିଷୟ-ଶିକ୍ଷକ ଶିଶୁର ସର୍ବାଙ୍ଗୀନ ବିକାଶ ପ୍ରତି ଦୃଷ୍ଟି ଦିଅନ୍ତି ନାହିଁ । ନିଜ ବିଷୟଟି ଶିକ୍ଷା ଦେଇସାରିବା ପରେ ସେ ଦାୟିତ୍ୱ-ମୁକ୍ତ ହୋଇଯାନ୍ତି ।

୨ । ବିଷୟ-ଶିକ୍ଷକ ବ୍ୟବସ୍ଥାରେ ସମନ୍ୱୟ ପଦ୍ଧତିରେ ଶିକ୍ଷାଦାନ ସବୁବେଳେ ସମ୍ଭବ ହୁଏନାହିଁ ।

୩ । ଶ୍ରେଣୀ ଶିକ୍ଷକ ସମସ୍ତ ପାଠ୍ୟ ବିଷୟ ଗୁଡ଼ିକମାନଙ୍କୁ ଉଚ୍ଚାଙ୍ଗ ଶିକ୍ଷା ଦେଇପାରିବା ସମ୍ଭବ ନୁହେଁ । କାରଣ ସେ ସବୁ ବିଷୟରେ ଅଗ୍ରଣୀ ଓ ଧୁରନ୍ଧର ହେବା ଆଦୌ ଆଶା କରାଯାଇ ନ ପାରେ ।

୪ । ଶ୍ରେଣୀ ଶିକ୍ଷକ କୌଣସି ଛାତ୍ର ସହିତ କେବଳ ଗୋଟିଏ ବର୍ଷ ପାଇଁ ସମ୍ପୃକ୍ତ; କିନ୍ତୁ ବିଷୟ-ଶିକ୍ଷକର ଛାତ୍ର ସହିତ ସ୍କୁଲ-ଜୀବନ ତମାମ ସଂପର୍କ ଥାଏ । ଏହା ଫଳରେ ଛାତ୍ରର କ୍ରମବିକାଶ ସଂପର୍କରେ ବିଷୟ-ଶିକ୍ଷକ ସ୍ପଷ୍ଟ ଧାରଣା ପାଇପାରନ୍ତି ଓ ଛାତ୍ରର ସୁବିଧା ଅସୁବିଧାରେ ବିଶେଷ ସହାୟକ ମଧ୍ୟ ହୋଇଥା'ନ୍ତି । କିନ୍ତୁ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହେବା ପରେ ଛାତ୍ର ସହିତ ଶ୍ରେଣୀ-ଶିକ୍ଷକଙ୍କର ଆଉ କୌଣସି ସଂପର୍କ ରହେନାହିଁ ।

୫ । ବିଷୟ-ଶିକ୍ଷକ ଯେପରି ସୁବିଧାରେ ସୋପାନବାଦୀ ଗୋଟିଏ ବିଷୟକୁ ଭାଗ ଭାଗ କରି ଶିକ୍ଷା ଦେଇ ପାରନ୍ତି—ଶ୍ରେଣୀ-ଶିକ୍ଷକ ତାହା ପାରନ୍ତି ନାହିଁ ।

୬ । ବର୍ଷାରମ୍ଭରେ ଶ୍ରେଣୀ-ଶିକ୍ଷକ ନୂଆ ଛାତ୍ରଙ୍କ ସହିତ ଅପରିଚିତ ହୋଇଥିବାରୁ କୌଣସି ଅଗ୍ରଗତି କରିପାରନ୍ତି ନାହିଁ । କେଉଁ ବିଷୟ ପିଲମାନେ କେତେ ଜାଣନ୍ତି—ସେ ସଂପର୍କରେ ପୂର୍ବରୁ ତାଙ୍କର କୌଣସି ଧାରଣା ନ ଥାଏ; କିନ୍ତୁ ବିଷୟ-ଶିକ୍ଷକ ଏପରି ଅସୁବିଧାରୁ ମୁକ୍ତ ।

୭ । ଶ୍ରେଣୀ-ଶିକ୍ଷକ ସବୁବେଳେ ଗୋଟିଏ ଶ୍ରେଣୀରେ ସମସ୍ତ ବିଷୟ

ଶିକ୍ଷା ଦେଇଥିବାରୁ ଶିକ୍ଷାଦାନ କମେ ବିରକ୍ତିକର ବୋଧହୁଏ; କାରଣ ଛାତ୍ରମାନେ ଶିକ୍ଷା ଗ୍ରହଣରେ ଆଉ କୌଣସି ନୂତନତ୍ୱ ଅନୁଭବ କରିପାରନ୍ତି ନାହିଁ ।

୮ । ଅପାରଗ ଶ୍ରେଣୀ-ଶିକ୍ଷକ ହାତୁଡ଼ରେ ପଢ଼ିଲେ ଛାତ୍ରମାନେ କମେ ସବୁ ବିଷୟରେ ମାନ୍ଦା ହୋଇ ପଡ଼ନ୍ତି, କିନ୍ତୁ-ବିଷୟ ଶିକ୍ଷକ-ବ୍ୟବସ୍ଥାରେ ଛାତ୍ର ସବୁ ବିଷୟରେ ଦୁର୍ବଳ ହୋଇଯିବାର ଆଦୌ ଆଶଙ୍କା ନ ଥାଏ ।

ଏସବୁ ଦୃଷ୍ଟିରୁ ବିଚାରକଲେ ନିମ୍ନବିଦ୍ୟାଳୟମାନଙ୍କରେ ଶ୍ରେଣୀ ଶିକ୍ଷକ ଓ ଉଚ୍ଚ ବିଦ୍ୟାଳୟମାନଙ୍କରେ ବିଷୟ-ଶିକ୍ଷକ-ବ୍ୟବସ୍ଥା ପ୍ରଚଳନ କରାଯିବା ଉଚିତ । ବିଷୟ-ଶିକ୍ଷକ-ବ୍ୟବସ୍ଥାରେ ମଧ୍ୟ ଜଣେ ଜଣେ ଶିକ୍ଷକ ଗୋଟିଏ ଗୋଟିଏ ଶ୍ରେଣୀର ପୂର୍ଣ୍ଣ ଦାୟିତ୍ୱ ବହନ କରିବା ଆବଶ୍ୟକ । ସେମାନେ ନିଜ ଶ୍ରେଣୀ ଛାତ୍ରମାନଙ୍କର ସର୍ବାଙ୍ଗୀନ ବିକାଶର ମୁଖ୍ୟ ଦାୟିତ୍ୱ ବହନ କରିବେ ।



# ଶିକ୍ଷକଙ୍କର ଗୁଣାବଳୀ-

ଶିକ୍ଷକ ଛାତ୍ରର ସାଥୀ, ନେତା ଓ ପରିଚାଳକ ହେବା ଉଚିତ । ସେ ତାହାର ସୁଖଦୁଃଖରେ ସହଭାଗୀ ହେବେ । କେବଳ ଅସାଧାରଣ ବୁଦ୍ଧିବୃତ୍ତିର ଅଧିକାରୀ ହେଲେ କେହି ଆଦର୍ଶ ଶିକ୍ଷକ ହୋଇପାରିବା କେବେ ସମ୍ଭବ ନୁହେଁ । ଏଥିପାଇଁ ହୃଦୟବାନ ଓ ସଚ୍ଚରିତ୍ର ବ୍ୟକ୍ତି ଆବଶ୍ୟକ । ସେ ଆଗ୍ରହସହକାରେ ଯେ କୌଣସି ଦାୟିତ୍ୱ ନେଇ ଆଣି ଥୋଇବାକୁ ଆଗଭର ହୋଇ ବାହାରିପାରୁଥିବେ । ଆଉମଧ୍ୟ ତାଙ୍କର ଆତ୍ମଶକ୍ତିରେ ଅଟଳ ବିଶ୍ୱାସ ଓ ସ୍ପଷ୍ଟଚିନ୍ତା ଥିବା ଆବଶ୍ୟକ ।

ଗାନ୍ଧିଜୀଙ୍କ ମତ ଅନୁସାରେ ଶିକ୍ଷକ ଛାତ୍ରମାନଙ୍କ ପକ୍ଷରେ ଚରିତ୍ର ଶିକ୍ଷାର ଉତ୍ସ ହେବା ଉଚିତ । ସେ ସରଳ, ଶିଶୁସ୍ନେହୀ ଓ ଆଦର୍ଶ ବ୍ୟକ୍ତି ହେବେ । ବାସ୍ତବିକ୍ ଶିକ୍ଷକ ହିଁ ଛାତ୍ରମାନଙ୍କର ଚରିତ୍ର ପାଠ୍ୟ ପୁସ୍ତକ ହେବା ଉଚିତ । ଛାତ୍ରମାନଙ୍କର ବାସ୍ତବ ସମସ୍ୟା-ସମାଧାନରେ ସେ କେବଳ ସହାୟକ ଓ ଦିଗ୍‌ଦର୍ଶକ ହୋଇ ଠିଆହେବେ ।

ନମ୍ରତା ଓ କର୍ମଠତା ଗୁଣଦ୍ୱୟ ଆଦର୍ଶ ଶିକ୍ଷକର ପ୍ରଧାନ ଭୂଷଣ । ଆଉ ମଧ୍ୟ ସେବା ଓ ପ୍ରେମ ଭିତ୍ତି ଉପରେ ତାଙ୍କର ଜୀବନ

ପ୍ରତିଷ୍ଠିତ ହେବା ଉଚିତ । ସେ ସହନଶୀଳ ଓ ଯାଦର୍ଶୀ ହେବେ । ରଚନାତ୍ମକ କାର୍ଯ୍ୟକ୍ରମରେ ତାଙ୍କର ଅଟଳ ବିଶ୍ୱାସ ଥିବ ଏବଂ ଏକ ସୁଖି, ସମୃଦ୍ଧ ସମାଜଗଠନ ଦିଗରେ ସେ ସର୍ବଦା ସଚେଷ୍ଟ ଥିବେ । ସ୍ୱାୟତ୍ତଶାସନ ବ୍ୟବସ୍ଥାରେ ତାଙ୍କର ବିଶ୍ୱାସ ଥିବ ଓ ନିଜର ଜୀବନକୁ ସେ ଗଣତନ୍ତ୍ରର ଭିତ୍ତି ଉପରେ ପ୍ରତିଷ୍ଠା କରିଥିବେ । ଏହିଭଳି ଜଣେ ବ୍ୟକ୍ତି ହିଁ ଆଦର୍ଶ ଶିକ୍ଷକର ପବିତ୍ର ଦାୟିତ୍ୱ ତୁଲାଇବାକୁ ଉପଯୁକ୍ତ ।

ମୌଳିକ ଶିକ୍ଷକ ସୃଜନଶୀଳ ଶକ୍ତିର ଅଧିକାରୀ ହେବା ଉଚିତ । ସେ ଉଦ୍‌ଯୋଗୀ ଓ ବିଭିନ୍ନ ବୈଷୟିକ ବିଦ୍ୟାରେ ପାରଙ୍ଗମ ହେବେ । ବୈଜ୍ଞାନିକ ମନୋବୃତ୍ତି ଓ ସହାନୁଭୂତିଶୀଳ ସ୍ୱଭାବର ଅଧିକାରୀ ହୋଇଥିଲେ ସେ ଅନେକାଂଶରେ ସଫଳତା ଅର୍ଜନ କରିପାରିବେ ।

ଶିଶୁର ଧନାତ୍ମ ପରିଚୟ ହିଁ ସମସ୍ତ ପ୍ରକାର ଶିକ୍ଷାଦାନ-ପଦ୍ଧତିର ମୂଳଭିତ୍ତି । ତେଣୁ ଶିକ୍ଷକ ଶିଶୁକୁ ଏଭଳି ସ୍ନେହ କରିବେ ଓ ତା' ସହିତ ଏଭଳି ଭାବରେ ମିଶିବେ ଯେପରିକି ଶିଶୁ ତା'ର ମା'ଭଳି ଶିକ୍ଷକଙ୍କୁ ବିଶ୍ୱାସ କରିପାରିବ । ସେ ମା'କୋଳରେ ମୁହଁ ଲୁଚାଇ ତା'ର ମନର କଥା କହି ପାରିଲାଭଳି ଗୁରୁଜୀଙ୍କୁ ମଧ୍ୟ ମନଖୋଲି ସମସ୍ତ କଥା କହିବାକୁ ସାହାସକରିବ । ଏହି ଉପାୟରେ ହିଁ ଶିଶୁରୂପକ ପୁଷ୍ପକଳିର ଭିତର ରଙ୍ଗ ଗୁରୁଜୀଙ୍କ ନିକଟରେ ସମ୍ପୂର୍ଣ୍ଣ ଭାବରେ ଫୁଟି ଉଠିବ । ଏହା ଫଳରେ ସେ ଶିଶୁର ଆଗ୍ରହ ଅଭିରୁଚି, ଇଚ୍ଛା ଅନିଚ୍ଛା, ଦୋଷ ଦୁର୍ବଳତା ଓ ଶକ୍ତି ସାମର୍ଥ୍ୟ ସମ୍ପର୍କରେ ସ୍ପଷ୍ଟ ଧାରଣା ପାଇପାରିବେ ଏବଂ ତଦନୁସାରେ ଶିଶୁକୁ ଗଢ଼ିବା ତାଙ୍କ ପକ୍ଷରେ ସହଜ ହୋଇଉଠିବ ।

ଶିଶୁମାନଙ୍କର ଅଧ୍ୟୟନ ପାଇଁ କେବଳ ମନୋବିଜ୍ଞାନ-ପୁସ୍ତକ ଉପରେ ନିର୍ଭରକଲେ ଚଳିବ ନାହିଁ । ଏଥି ପାଇଁ

ଶିକ୍ଷକଙ୍କୁ ଜଣେ ବ୍ୟାବହାରିକ ମନସ୍ତତ୍ତ୍ୱବିଦ୍ ହେବାକୁ ପଡ଼ିବ । ଶିଶୁକୁ ଏକ ପୂର୍ଣ୍ଣାଙ୍ଗ ମାନବ ରୂପେ ଗଠନ କରିବା ଦୃଷ୍ଟିରୁ ହାସଲ କରିଥିବା ଅଭିଜ୍ଞତା ଉପରେ ସେ ନିର୍ଭର କରିବେ । ଏହି ଉଦ୍ଦେଶ୍ୟରେ ପ୍ରତେକ ଶିଶୁର ଠିକ୍ ନିଖ୍ ବିବରଣୀ ସେ ଟିପି ରଖିବା ଉଚିତ ।

ଶିକ୍ଷକ ହିସାବରେ ଆମ୍ଭମାନଙ୍କୁ ଆଶାବାଦୀ ହେବାକୁ ପଡ଼ିବ । ଛାତ୍ରର କେବଳ ଦୋଷ ଦୁର୍ବଳତା ଖୋଜି ନ ବୁଲି ତାହାର ଅନ୍ତର୍ନିହିତ ଶକ୍ତି ଓ ସଦ୍‌ଗୁଣରାଜି ଉପରେ ଆମକୁ ବିଶ୍ୱାସ ସ୍ଥାପନ କରିବାକୁ ହେବ । ତାହାକୁ ସମସ୍ତ ସତ୍ କାର୍ଯ୍ୟରେ ଉତ୍ସାହିତ କରିବାକୁହେବ । କେବେହେଲେ କୌଣସି ଛାତ୍ରର ବିଚାରରେ କୌଣସି ମନ୍ଦଭାବ ପୋଷଣକରି ତଦନୁସାରେ ପରିଚାଳିତ ହେବା ଅନୁଚିତ । ଯେତେ ମନ୍ଦ ହେଲେବି ଛାତ୍ରର କୌଣସି ନା କୌଣସି ଦିଗରେ ବିଶେଷ ଶକ୍ତିସାମର୍ଥ୍ୟ ଓ ଦକ୍ଷତା ରହିଛି— ଏହି ବିଶ୍ୱାସରେ ଶିକ୍ଷକଙ୍କୁ ବିଶ୍ୱାସୀ ହେବାକୁ ପଡ଼ିବ । ଯେଉଁ ଦିଗରେ ଯେଉଁ ଛାତ୍ରର ବିକାଶର ସମ୍ଭାବନା ରହିଛି—ତାହା ପୂରାପୂରି ଫୁଟାଇ ପାରିବା ଶିକ୍ଷକ ହିସାବରେ ଆମର ପରମ କର୍ତ୍ତବ୍ୟ ।

ଶିକ୍ଷାଦାନ କାର୍ଯ୍ୟରେ ଶିକ୍ଷକଙ୍କର ଆତ୍ମ-ସନ୍ତୋଷ ଆସୁଥିବା ନିତାନ୍ତ ଦରକାର । ଆଉ ସେହି କାର୍ଯ୍ୟ ପ୍ରତି ତାଙ୍କର ନିଷ୍ଠା ରହିଥିବା ଉଚିତ । ଅନ୍ୟ କୌଣସି ଦିଗରେ କିଛି ସୁବିଧା ହୋଇ ନ ପାରିଲା ବୋଲି ବାଧ୍ୟ ହୋଇ ଶିକ୍ଷକତା କରିବା ଅନ୍ୟାୟ ଓ ଅସଙ୍ଗତ । ଏହା ଦେଶ ଓ ଜାତି ପ୍ରତି ବିଶ୍ୱାସଘାତକତା ବ୍ୟତୀତ ଅନ୍ୟ କିଛି ନୁହେଁ ।

ସବୁ ଛାତ୍ରଙ୍କୁ ଶିକ୍ଷକ ସମାନ ଭାବରେ ପୁତ୍ର ତୁଲ୍ୟ ବ୍ୟବହାର କରିବେ । କେତେକ କ୍ଷେତ୍ରରେ ଶିକ୍ଷକ କେତେକଣ ନିର୍ଦ୍ଦିଷ୍ଟ ଛାତ୍ରଙ୍କ ପ୍ରତି ଅଧିକ ଆକୃଷ୍ଟ ହୋଇ ପଡ଼ିବାର ଦେଖାଯାଏ । କିନ୍ତୁ ସେ ସର୍ବଦା ନିରପେକ୍ଷ ଓ ନ୍ୟାୟପରାୟଣ ହେବା ଉଚିତ । ଦୁର୍ବଳ ଛାତ୍ରଙ୍କ ପ୍ରତି ବିମୁଖ ଓ ବିରକ୍ତ ନ ହୋଇ ସେ ସହାନୁଭୂତିଶୀଳ ହେବେ । କେଉଁ ଉପାୟରେ ଛାତ୍ର ତା'ର ଦୋଷ ଦୁର୍ବଳତାରୁ ମୁକ୍ତି ଲାଭ କରି ପାରିବ—ସେ ଦିଗରେ ସେ ନିଜେ ଚିନ୍ତା କରିବେ ଓ ଛାତ୍ରକୁ ଉପଯୁକ୍ତ ବାଟ ବତାଇବେ । ଶିକ୍ଷକଙ୍କର ନିନ୍ଦା ଓ ବିରକ୍ତି ଫଳରେ କେତେକ ଛାତ୍ରଙ୍କ ମନରେ ନିକୃଷ୍ଟ ତୁଚ୍ଛ ମନୋଭାବର ( Inferiority Complex ) ପ୍ରସାର ଘଟେ ଓ ତାହାର ଆତ୍ମଶକ୍ତି ଉପରେ ସମସ୍ତ ଆସ୍ଥା ତୁଟିଯାଏ । ଏହା ଫଳରେ "ଖସିଗଲା ଗୋଡ଼ ତଳକୁ ତଳକୁ" ପରି ସେ ଅସ୍ତେ ଅସ୍ତେ ତଳକୁ ଖସିଯାଏ । ତେଣୁ ଛାତ୍ରମାନେ ଯେପରି କାର୍ଯ୍ୟ କ୍ଷେତ୍ରରେ ସଫଳତା ହାସଲ କରିବେ ଓ ଆତ୍ମଶକ୍ତିରେ ଅଧିକ ଆସ୍ଥାବାନ ହୋଇଉଠିବେ—ସେ ଦିଗରେ ଦୃଷ୍ଟିଦେବା ଶିକ୍ଷକଙ୍କର ପରମ କର୍ତ୍ତବ୍ୟ । ( 'Nothing succeeds like success') ବା ସଫଳତା ଅର୍ଜନ କରିବା ପାଇଁ ସଫଳତାଠାରୁ ବଳି ସଫଳ ପନ୍ଥା ନାହିଁ—ଏହି ସୁବର୍ଣ୍ଣ ମାନକୁ ଆଖି ଆଗରେ ରଖି ଶିକ୍ଷକ ପଦେ ପଦେ ସାବଧାନ ହୋଇ ଅଗ୍ରସର ହେବା ଉଚିତ ।

ମୌଳିକ ଶିକ୍ଷକ କେବଳ ପାଠ୍ୟ ବିଷୟରେ ଧୁରନ୍ଧର ହେଲେ ଚଳିବ ନାହିଁ; ଶିଶୁର ଜୀବନ କରିଆରେ ବିଭିନ୍ନ ପାଠ୍ୟ ବିଷୟକୁ ସମନ୍ୱୟକରି ଶିକ୍ଷା ଦେବାର ପଦ୍ଧତି (Correlation method) ମଧ୍ୟ ତାଙ୍କୁ ଭଲ ଭାବରେ ଜଣାଥିବା ଉଚିତ । ଦୁନିଆଁରେ ବାସ୍ତବ ଜ୍ଞାନ ଜୀବନ-କ୍ଷେତ୍ରରୁ ବିଚ୍ଛିନ୍ନ ନୁହେଁ । ଜୀବନର କୌଣସି ପ୍ରୟୋଜନର ମେଣ୍ଟନ ବା ସମସ୍ୟାର ସମାଧାନ ଛଳରେ ଯେଉଁ

ଜୀବନୋପଯୋଗୀ ଶିକ୍ଷାଦାନ କରାଯାଏ—ତାହାକୁ ସମନ୍ୱୟ-ଶିକ୍ଷା କୁହାଯାଏ । ତେଣୁ ଟିକିଏ ଚିନ୍ତା କରି ପରିସ୍ଥିତି ପ୍ରତି ସଚେତ ରହିଲେ ଓ ଛାତ୍ର-ମାନଙ୍କର ମାନସିକ ଜୀବନ ସହିତ ଘନିଷ୍ଠ ସମ୍ପର୍କ ରଖିପାରିଲେ ଯେ କେହି ଶିକ୍ଷକ ସହଜରେ ସମନ୍ୱୟ-ପ୍ରଣାଳୀରେ ଶିକ୍ଷା ଦେଇପାରେ; ଏଥିପାଇଁ ଅସାଧାରଣ ବୁଦ୍ଧିବୃତ୍ତି ଓ ବିଚକ୍ଷଣତାର ଆବଶ୍ୟକତା ନାହିଁ ।

ମୋଟ୍ ଉପରେ ମୌଳିକ ଶିକ୍ଷକ ନିମ୍ନଲିଖିତ ଗୁଣରାଜିରେ ଭୂଷିତ ହେବା ଉଚିତ ।

୧ । ଶିଶୁମାନଙ୍କ ପ୍ରତି ସ୍ୱାଭାବିକ ସ୍ନେହ ଓ ଆଗ୍ରହ ଥିବ ।

୨ । ଛାତ୍ରମାନଙ୍କ ସହିତ ଛାତ୍ରହୋଇ ଖେଳିବା ଓ କାମଦାମ କରି ପାରିବାର ଶକ୍ତି ଶିକ୍ଷକ ହାସଲ କରିଥିବେ ।

୩ । ଆଦର୍ଶଚରିତ୍ର ଓ ବ୍ୟକ୍ତିତ୍ୱର ଅଧିକାରୀ ହୋଇଥିବେ ।

୪ । ଶିକ୍ଷକ ସୁସ୍ଥ ସବଳ ଓ କର୍ମଠ ହୋଇଥିବେ ।

୫ । ସେ ପ୍ରକୃତି ପ୍ରେମୀ ଓ କଳାପ୍ରେମୀ ହୋଇଥିବେ ।

୬ । ସେ ଧୈର୍ଯ୍ୟଶୀଳ ଓ ଶିକ୍ଷାଗ୍ରହୀ ହେବେ ଏବଂ ସମସ୍ତଙ୍କ ସହିତ ସହଜରେ ମିଳିମିଶି ପାରୁଥିବେ ।

୭ । ବିଭିନ୍ନ ହସ୍ତକର୍ମ ଓ ଶିଳ୍ପ ବିଦ୍ୟାରେ ପାରଙ୍ଗମ ହୋଇଥିବେ ।

୮ । ସଙ୍ଗୀତ ଓ ଚିତ୍ର ବିଦ୍ୟାରେ କିଛି ପ୍ରବେଶ ଥିବ ।

୯ । ମାଦକ ଦ୍ରବ୍ୟ ସେବନ ବା ଅନ୍ୟ କୌଣସି ମନ୍ଦ ଅଭ୍ୟାସ ନ ଥିବ ।

୧୦ । ତାଙ୍କର ସ୍ୱଚ୍ଛତା ଓ ସୌନ୍ଦର୍ଯ୍ୟବୋଧ ପ୍ରବଳ ଥିବ ।

୧୧ । ସେ ଗ୍ରାମ-ସଂଗଠନ କାର୍ଯ୍ୟରେ ଆଗ୍ରହୀ ହୋଇଥିବେ ।

୧୨ । ତାଙ୍କର ବୈଜ୍ଞାନିକ ଦୃଷ୍ଟିକୋଣ ରହିଥିବ ।

୧୩ । ସ୍ୱାୟତ୍ତଶାସନ ବ୍ୟବସ୍ଥା ପ୍ରତି ନିଜର ସମର୍ଥନ ଓ ସମ୍ମାନ ଥିବ ।

୧୪ । ନାନାବିଧ ଆଧୁନିକ ପୁସ୍ତକ ଓ ପତ୍ରିକା ପଢ଼ି ନିଜର ଜ୍ଞାନ-ଭଣ୍ଡାରକୁ ମାର୍ଜିତ କରୁଥିବେ ।

୧୫ । ମୌଳିକ ଶିକ୍ଷାଯୋଜନା ଓ ଗାନ୍ଧୀଦର୍ଶନ ଉପରେ ନିଜର ବିଶ୍ୱାସ ଥିବ ।

ସବୁଠାରୁ ଉଚ୍ଚଶିକ୍ଷିତ ଓ ତାଲିମ୍ ପ୍ରାପ୍ତ ସୁଦକ୍ଷ ଶିକ୍ଷକ ମାନେ ନିମ୍ନ ଶ୍ରେଣୀମାନଙ୍କ ଦାୟିତ୍ୱରେ ରହିବା ଉଚିତ । ଏହି ମତ ଅନୁସୃତ ହେଲେ ଛୋଟ ଛୋଟ ଶିଶୁମାନଙ୍କ ଜୀବନର ଭିତ୍ତିପତ୍ତନ ଠିକ୍ ଢଙ୍ଗରେ ହୋଇ ପାରିବ । ଅନୁକରଣ ପ୍ରବୃତ୍ତିଦ୍ୱାରା ସେମାନେ ଉଚ୍ଚଶିକ୍ଷିତ ଆଦର୍ଶ ଶିକ୍ଷକଙ୍କଠାରୁ ଆପେ ଆପେ ଅନେକ ବିଷୟ ଶିକ୍ଷାଲାଭ କରି ପାରିବେ ।

———

# ପ୍ରଧାନ ଶିକ୍ଷକଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ

ଶିକ୍ଷକ ଓ ଛାତ୍ରମାନଙ୍କୁ ସବୁବେଳେ କେବଳ ନିର୍ଦ୍ଦେଶ ଦେବା ଓ ଭୁଲ୍ ତ୍ରୁଟି ହେଲେ ଦଣ୍ଡବିଧାନକରିବା ପ୍ରଧାନ ଶିକ୍ଷକଙ୍କର ଏକମାତ୍ର କର୍ତ୍ତବ୍ୟ ନୁହେଁ । ସେ ସମଗ୍ର ବିଦ୍ୟାଳୟକୁ ସୁଦକ୍ଷ ନେତୃତ୍ୱ ଦେବାକୁ ସମର୍ଥ ହେବା ଆବଶ୍ୟକ । ତାଙ୍କର କାର୍ଯ୍ୟକଳାପ ଫଳରେ ସେ ସ୍ୱତଃ ସମ୍ମାନର ପାତ୍ର ହୋଇପାରୁ-ଥିବେ ଓ ଏପରି ଭାବରେ ବିଦ୍ୟାଳୟ ପରିଚାଳନାକରିବେ ଯେପରିକି ଦଣ୍ଡ ବିଧାନର ଆବଶ୍ୟକତା କମ୍‌ରୁକମ୍ ଅନୁଭୂତ ହେବ ।

ପ୍ରଧାନ ଶିକ୍ଷକ ଅଗ୍ରଣୀ ହୋଇ କି ଶିକ୍ଷକ କି ଛାତ୍ର ସମସ୍ତଙ୍କର ସୁବିଧା ଅସୁବିଧା ବୁଝୁଥିବେ । ସମସ୍ତେ ନିଃସଙ୍କୋଚରେ ନିଜ ନିଜର ଅଭାବ ଅସୁବିଧା ତାଙ୍କୁ ଜଣାଇପାରିବେ । ସେ ଧୈର୍ଯ୍ୟର ସହିତ ସମସ୍ତଙ୍କର ମତାମତକୁ ଶୁଣି ଆବଶ୍ୟକ ପରାମର୍ଶ ଦେବେ ଓ ତଦନୁସାରେ ଦରକାରହେଲେ ନିଜକୁ ବଦଳାଇବେ ।

କୌଣସି ବିଷୟରେ ନିର୍ଦ୍ଦେଶ ଦେବା ପୂର୍ବରୁ ତାହା କାର୍ଯ୍ୟ-କାରୀ ହୋଇ ପାରିବ କି ନାହିଁ ସେ ସମ୍ପର୍କରେ ପ୍ରଧାନ ଗୁରୁଜୀ ଚିନ୍ତା କରିବେ । କିନ୍ତୁ ନିର୍ଦ୍ଦେଶ ଦେଇ ସାରିବା ପରେ ତାହା

ଯେପରି ପାଳିତ ହୋଇ କାର୍ଯ୍ୟକାରୀ କରାଯାଏ—ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେବାକୁ ହେବ । ନିର୍ଦ୍ଦେଶ ଦେବା ପୂର୍ବରୁ ସହକର୍ମୀମାନଙ୍କର ପରାମର୍ଶମଧ୍ୟ ସ୍ଥଳ ବିଶେଷରେ ନିଆଯାଇ ପାରେ । ଯେତେବେଳେ ପ୍ରଧାନଶିକ୍ଷକଙ୍କର ହୃଦ୍‌ବୋଧ ହେବ ଯେ, ତାଙ୍କର ନିର୍ଦ୍ଦେଶ କାର୍ଯ୍ୟକାରୀ ହେବା ଆଉ ସମ୍ଭବ ନୁହେଁ--ସେତେବେଳେ ସେ ନିଜେ ତାହାକୁ କୌଣସିମତେ କାର୍ଯ୍ୟକାରୀ କରିବା ଉଚିତ ବା ଆଦେଶକୁ ପ୍ରତ୍ୟାହାର କରିନେବା ଉଚିତ । କିନ୍ତୁ ପ୍ରଧାନ ଶିକ୍ଷକଙ୍କର ଆଦେଶ ଯଦି ମୁହୁର୍ମୁହୁ ପ୍ରତ୍ୟାହୃତ ହୁଏ, ତା'ହେଲେ ଭବିଷ୍ୟତରେ ସେପରି ଆଦେଶ ସମ୍ମାନିତ ନ ହେବାରଖୁବ୍ ଆଶଙ୍କା ରହିଛି । ପ୍ରଧାନ ଶିକ୍ଷକ ଛାତ୍ର ଓ ଅନ୍ୟାନ୍ୟ ଶିକ୍ଷକମାନଙ୍କ ଉପରେ ଏପରି ପ୍ରଭାବ ବିସ୍ତାର କରିବେ, ଯେପରିକି ତାଙ୍କର ସାମାନ୍ୟ ଅନୁରୋଧ ମଧ୍ୟ ଗୁରୁତର ଆଦେଶ ଭଳି କାର୍ଯ୍ୟକାରୀ କରାଯାଇ ପାରୁଥିବ ।

ପ୍ରଧାନ ଶିକ୍ଷକ ଛାତ୍ରମାନଙ୍କର ଘନିଷ୍ଠ ସମ୍ପର୍କରେ ଆସିବେ । ବ୍ୟକ୍ତିଗତ ଭାବରେ ପ୍ରତ୍ୟେକ ଛାତ୍ରର ନାମ ଧାମ ଚରିତ୍ର, ବୈଶିଷ୍ଟ୍ୟ ଆଦି ଅଳ୍ପେ ଅଳ୍ପେ ଜାଣିବାକୁ ସେ ଚେଷ୍ଟା କରିବା ଉଚିତ । ଛାତ୍ରମାନଙ୍କର କାମଦାମ ଓ ଖେଳ କୌତୁକରେ ସେ ବେଳେ ବେଳେ ଭାଗ ନେବେ । ଏହାଦ୍ୱାରା ଛାତ୍ରମାନେ ବିଶେଷ ଭାବରେ ଉତ୍ସାହିତ ହୁଅନ୍ତି । ନମ୍ରତା, ସହନଶୀଳତା ଓ ଶିଷ୍ଟାଚାର ଦ୍ୱାରା ପ୍ରଧାନଶିକ୍ଷକ ଶିକ୍ଷକତଥା ଛାତ୍ର ମଣ୍ଡଳର ହୃଦୟ-ସିଂହାସନ ଅଧିକାର କରିନେବା ଉଚିତ ।

ସହକାରୀମାନଙ୍କ ପ୍ରତି ବ୍ୟବହାରରେ ପ୍ରଧାନ ଶିକ୍ଷକ କୌଣସି ତ୍ରୁଟି ଦେଖାଇବା ଅନୁଚିତ । ମଧୁର ବ୍ୟବହାର ଓ ଶିଷ୍ଟାଚାର ପ୍ରଦର୍ଶନରେ ସେ ସହକର୍ମୀମାନଙ୍କ ସମକ୍ଷରେ ଆଦର୍ଶ ହେବା ଉଚିତ । ଶିକ୍ଷକମାନଙ୍କ ମଧ୍ୟରେ ଯେପରି ଭେଦଭେଦ ସୃଷ୍ଟି ନହୁଏ, ସେଥିପ୍ରତି ସେ

ସବୁବେଳେ ସଜାଗ ରହିବେ । ସମସ୍ତଙ୍କର ଅଭାବ ଅଭିଯୋଗ ସେ ମନଦେଇ ଶୁଣିବେ ଓ ନିଜର ବୁଦ୍ଧି ବୃତ୍ତି ଖଟାଇ ଆବଶ୍ୟକ କାର୍ଯ୍ୟାନୁଷ୍ଠାନ କରିବେ । କିନ୍ତୁ ସେ କୌଣସି ଶିକ୍ଷକ-ଗୋଷ୍ଠୀ ସହିତ ଲିପ୍ତ ହୋଇଯିବା ଅନୁଚିତ । ସେ ନିରପେକ୍ଷ ଓ ନ୍ୟାୟପରାୟଣ ହେବେ । ଯେଉଁ ଶିକ୍ଷକଙ୍କ ଦ୍ୱାରା ଶିକ୍ଷକମାନଙ୍କ ମଧ୍ୟରେ ବିଭେଦ ଓ ଦଳାଦଳି ସୃଷ୍ଟି ହେଉଥିବାର ସେ ଅନୁଭବ କରିବେ, ତାହାଙ୍କୁ ବଦଳାଇବା ପାଇଁ ସେ ନୈତିକ ପ୍ରଭାବ ପକାଇବାକୁ ଚେଷ୍ଟା-କରିବେ । ଯଦି କୌଣସି ପରିବର୍ତ୍ତନର ସୂଚନା ନ ମିଳିଲା, ତେବେ ସେ ଶିକ୍ଷକଙ୍କର ସ୍ଥାନାନ୍ତର ( Transfer) ପାଇଁ ସେ ସମସ୍ତ ଉଦ୍ୟମ କରିବେ । ବିଦ୍ୟାଳୟରେ ଶିକ୍ଷକମାନଙ୍କ ମଧ୍ୟରେ କୌଣସି ରକମର ମନାନ୍ତରକୁ ସେ ଆଦୌ ପ୍ରଶ୍ରୟଦେବା ଅନୁଚିତ ।

ପ୍ରଧାନ ଶିକ୍ଷକଙ୍କୁ ମଧ୍ୟ ବେଳେବେଳେ ବାଧ୍ୟ ହୋଇ ଅପ୍ରୀତିକର କାର୍ଯ୍ୟରେ ହାତ ଦେବାକୁ ପଡ଼େ । ଅନୁଷ୍ଠାନର ଶାନ୍ତି ଶୃଙ୍ଖଳା ରକ୍ଷା ପ୍ରଧାନ ଶିକ୍ଷକଙ୍କର ପ୍ରଧାନ କର୍ତ୍ତବ୍ୟ । ଯେତେବେଳେ ଅନୁଷ୍ଠାନର ଶାନ୍ତି ଶୃଙ୍ଖଳାରେ ସଙ୍କଟ ଦେଖା ଦିଏ, ସେତେବେଳେ ସେ ଦୃଢ଼ ହସ୍ତରେ ତାହା ଦମନକରିବା ଉଚିତ । ଏଥିପାଇଁ ନିଜର ସ୍ୱେଚ୍ଛା ଲୋକପ୍ରିୟତାକୁ ଧରି ବସିଲେ ଅନୁଷ୍ଠାନ ଭାଙ୍ଗିପଡିବ । ତେଣୁ ନମ୍ରତା ଓ ନିର୍ଭୀକତା ପ୍ରଧାନ ଶିକ୍ଷକଙ୍କର ପ୍ରଧାନ ଗୁଣ ହେବା ଉଚିତ । ପ୍ରଧାନ ଶିକ୍ଷକ ଅତିମାତ୍ରାରେ କୋମଳ ହେଲେ ଲୁହାକୁ ବଗାଡ଼ କାମୁଡ଼ିବା ପରି ନିଜର ସମସ୍ତ ପ୍ରତିଷ୍ଠା ଶିକ୍ଷକ ଓ ଛାତ୍ର ମଣ୍ଡଳରୁ ହରାଇ ବସିବାର ଯଥେଷ୍ଟ ଆଶଙ୍କା ରହିଛି । ତେଣୁ ଏ କ୍ଷେତ୍ରରେ ସେ ହାତେ ମାପି ଗୃଖଣ୍ଡେ ଚଳିବା ତାଙ୍କର କର୍ତ୍ତବ୍ୟ ।

ଛାତ୍ରମାନଙ୍କର ସମକ୍ଷରେ ସହକାରୀମାନଙ୍କର ସମ୍ମାନ କ୍ଷୁର୍ଣ୍ଣ ହେଲା ଭଳି ପ୍ରଧାନ ଶିକ୍ଷକ କିଛି କରିବସିବା ଠିକ୍

ନୁହେଁ । ଶିକ୍ଷକମାନଙ୍କର ସମ୍ମାନହିଁ ନିଜର ସମ୍ମାନ—ଏହି ମନୋଭାବ ସେ ପୋଷଣ କରିବା ଠିକ୍ ହେବ । ସହକାରୀମାନଙ୍କୁ କିଛି କହିବାର ଥିଲେ ଏକାନ୍ତରେ ଡାକି କହିବା ଉଚିତ । ଏହି ବିଷୟ ପ୍ରତି ପ୍ରଧାନ ଶିକ୍ଷକମାନେ ବିଶେଷ ସତର୍କ ହେବାର କଥା ।

ସହକାରୀ ଶିକ୍ଷକମାନଙ୍କ କାର୍ଯ୍ୟକଳାପ ତତ୍ତ୍ୱାବଧାନ ଓ ତଦାରଖ କରିବା ପ୍ରଧାନ ଶିକ୍ଷକଙ୍କର ଅନ୍ୟ ଏକ କର୍ତ୍ତବ୍ୟ ଶିକ୍ଷକମାନେ ଠିକମତ ସେମାନଙ୍କ କର୍ତ୍ତବ୍ୟ ସମ୍ପାଦନ କରୁଛନ୍ତି କି ନାହିଁ, ତାହା ଦେଖିବା ତାଙ୍କର କାର୍ଯ୍ୟ । କିନ୍ତୁ କେତେକ କ୍ଷେତ୍ରରେ କେବଳ ଦୋଷ ଦର୍ଶାଇବା ଉଦ୍ଦେଶ୍ୟରେହିଁ ପ୍ରଧାନ ଶିକ୍ଷକମାନେ ଶ୍ରେଣୀ ପରିଦର୍ଶନ କରିବାର ଦେଖାଯାଏ । ଏଭଳି ମନୋବୃତ୍ତି ଧରି ପରିଦର୍ଶନ କଲେ ପ୍ରଧାନ ଶିକ୍ଷକ ଅନ୍ୟ ସହକର୍ମୀମାନଙ୍କର ସାହାଯ୍ୟ ସହଯୋଗ ହରାଇ ବସନ୍ତି । ସହକାରୀମାନଙ୍କର ବାସ୍ତବ ଅଭାବ ଅସୁବିଧା ବୁଝିବା ଓ ସନ୍ଦେହ ମୋଚନ କରିବା ଶ୍ରେଣୀ-ପରିଦର୍ଶନର ମୂଳ ଲକ୍ଷ୍ୟ ହେବା ଉଚିତ । ଶ୍ରେଣୀରେ ବିଭିନ୍ନ ଖାତାପତ୍ର ଠିକ୍ ଢଙ୍ଗରେ ରଖାଯାଉଛି କି ନାହିଁ ଓ ସେସବୁ ଠିକମତ ସଂଶୋଧିତ ହେଉଛି କି ନାହିଁ—ପ୍ରଧାନ ଶିକ୍ଷକ ଏଥିପ୍ରତି ବିଶେଷ ଗୁରୁତ୍ୱ ଦେବା ଉଚିତ । ସହକାରୀମାନେ ମଧ୍ୟ ପ୍ରଧାନ ଶିକ୍ଷକଙ୍କର ଶ୍ରେଣୀ-ପରିଦର୍ଶନ କାର୍ଯ୍ୟର ସୁବିଧା ନେଇ ନିଜର ଥିବା ସମସ୍ତ ସନ୍ଦେହ ଏହି ଅବସରରେ ତାଙ୍କ ଦ୍ୱାରା ମୋଚନ-କରାଇନେବା ଉଚିତ ।

ନୂଆ ନୂଆ ପ୍ରଧାନ ଶିକ୍ଷକମାନେ ଆଗ୍ରହାତିଶଯ୍ୟ ହେତୁ ବିଦ୍ୟାଳୟରେ ହଠାତ୍ ଅନେକ ପରିବର୍ତ୍ତନ କରିବାକୁ ବସନ୍ତି । ଏହା ଫଳରେ ତାଙ୍କୁ ନାନା ବାଧା ବିଘ୍ନର ସମ୍ମୁଖୀନ ହେବାକୁ ପଡ଼େ । ତେଣୁ ହଠାତ୍ କିଛି ପରିବର୍ତ୍ତନ ନ କରି ବିଦ୍ୟାଳୟରେ

ପରିବର୍ତ୍ତନର ଆବଶ୍ୟକତା ଅନୁଭୂତ ହେବାଫଳେ ପରିସ୍ଥିତି ସୃଷ୍ଟି କରିବାକୁ ହେବ । ଗୁରୁତର ପରିବର୍ତ୍ତନ ଓ ସମସ୍ୟାମାନଙ୍କ ସମ୍ପର୍କରେ ପ୍ରଧାନ ଶିକ୍ଷକ, ଶିକ୍ଷକ ମଣ୍ଡଳୀର ପରାମର୍ଶ ଗ୍ରହଣ କରିବା ଉଚିତ । ଏହା ଫଳରେ କାର୍ଯ୍ୟକ୍ଷେତ୍ରରେ ପ୍ରଧାନ ଶିକ୍ଷକ ସମସ୍ତଙ୍କର ଆନ୍ତରିକ ସହଯୋଗ ଓ ସମର୍ଥନ ଲାଭ କରି ପାରନ୍ତି ।

ପ୍ରତି ମାସରେ ଅତି କମ୍‌ରେ ଥରେ ଶିକ୍ଷକମଣ୍ଡଳୀର ବୈଠକ ଡକା ଯିବ । କିନ୍ତୁ ଯେତେଦୂର ସମ୍ଭବ ଗଣତନ୍ତ୍ରର ଭିତ୍ତିରେହିଁ ଏହି ସଭା ପରିଚାଳିତ ହେବା ଉଚିତ । ବୈଠକ ବସିବା ପୂର୍ବରୁ ଆଲୋଚନାର କାର୍ଯ୍ୟକ୍ରମ ଶିକ୍ଷକମାନଙ୍କୁ ଜଣାଇ ଦିଆଯିବ । ଏହା ଫଳରେ ବିଭିନ୍ନ ଆଲୋଚ୍ୟ ବିଷୟ ସମ୍ପର୍କରେ ଶିକ୍ଷକମାନେ ଭଲଭାବରେ ଚିନ୍ତା କରିବାକୁ ଅବସର ପାଇବେ । ସହକର୍ମୀମାନଙ୍କର ସତ୍ ପରାମର୍ଶ ଓ ମୂଲ୍ୟବାନ୍ ପ୍ରସ୍ତାବ ସବୁ ଆଗ୍ରହ ସହକାରେ ପ୍ରଧାନ ଶିକ୍ଷକ ଗ୍ରହଣ କରିନେବା ଉଚିତ । ଶିକ୍ଷକମାନେ ଯେପରି ଅନୁଷ୍ଠାନକୁ ନିଜର ମନେ କରି ତାହାର ଉନ୍ନତି ଓ ମଙ୍ଗଳ ପାଇଁ ଚିନ୍ତାକରିବା ସଙ୍ଗେ, ସଙ୍ଗେ ଆବଶ୍ୟକ ଦାୟିତ୍ୱ ତୁଲନ୍ତି, ସେଥିପ୍ରତି ଦୃଷ୍ଟିଦେବା ପ୍ରଧାନ ଶିକ୍ଷକଙ୍କର ପରମ କର୍ତ୍ତବ୍ୟ । ଯଦି ପ୍ରଧାନ ଶିକ୍ଷକଙ୍କର ଉତ୍ତମ ପ୍ରସ୍ତାବକୁ ବହୁମତରେ ବିରୋଧ କରାଯାଏ, ତା' ହେଲେ ସେ ଧୈର୍ଯ୍ୟ ସହକାରେ କିଛି ସମୟ ଅପେକ୍ଷା କରିବା ଉଚିତ । ପରେ ଶିକ୍ଷକମାନଙ୍କୁ ବୁଝାଇ ସୁଝାଇ ସେ ତାଙ୍କର ପ୍ରସ୍ତାବକୁ କାର୍ଯ୍ୟକାରୀ କରିପାରନ୍ତି । କିନ୍ତୁ ବହୁ ମତରେ ବିରୋଧ ହେଲେ ପ୍ରସ୍ତାବରେ କୌଣସିଠିଁ କିଛି ତ୍ରୁଟି ଅଛି ବୋଲି ପ୍ରଧାନ ଶିକ୍ଷକ ମାନିନେବା ଉଚିତ ।

ମୋଟ ଉପରେ ନିମ୍ନ କେତୋଟି ପ୍ରଧାନ ନୀତିକୁ ଆଖି ଆଗରେ

ରଖି ପ୍ରଧାନ ଶିକ୍ଷକ ମହୋଦୟ ବିଦ୍ୟାଳୟ ପରିଚାଳନା କରିବା ଉଚିତ ।

୧ । ପ୍ରଧାନ ଶିକ୍ଷକ ଆଦର୍ଶ ଜୀବନ ଯାପନ କରିବେ ଓ ମାଡବାନ୍ ହେବେ ।

୨ । ନିଜର ସମ୍ମାନ ଅକ୍ଷୁର୍ଣ୍ଣ ରଖିବେ ।

୩ । ନିଜର କଥା ଓ କାର୍ଯ୍ୟ ମଧ୍ୟରେ ଦ୍ୱୈତଭାବ ନଥିବ ।

୪ । ସମସ୍ତଙ୍କ ପ୍ରତି ନମ୍ର, ଭଦ୍ର ଓ ସହାନୁଭୂତଶୀଳ ହେବେ ।

୫ । ସହକାରୀମାନଙ୍କୁ ସବୁବେଳେ ନିର୍ଦ୍ଦେଶ ନଦେଇ ଅନୁରୋଧ କରିବା ଉଚିତ ।

୬ । ସହକର୍ମୀ ଓ ଛାତ୍ରମାନଙ୍କର ଅଭାବ ଅସୁବିଧା ଓ ଅଭିଯୋଗ ଧୈର୍ଯ୍ୟର ସହିତ ଶୁଣିବେ ଓ ଆଶୁ ପ୍ରତିକାରର ବ୍ୟବସ୍ଥା କରିବେ ।

୭ । ବିଦ୍ୟାଳୟର ଶାନ୍ତିଶୃଙ୍ଖଳା ରକ୍ଷା ପଥରେ ଯେଉଁମାନେ କଣ୍ଟକ, ସେମାନଙ୍କ ନୈତିକ ପରିବର୍ତ୍ତନ ପାଇଁ ପ୍ରବଳ ଉଦ୍ୟମ କରିବେ । ଏହା ସଫଳ ନ ହେଲେ ସେମାନଙ୍କୁ ଅନୁଷ୍ଠାନରୁ ଅନ୍ତର କରିଦେବେ ।

୮ । ନିର୍ଭୀକ ଓ ସାହସୀ ହେବେ । ବିଦ୍ୟାଳୟ ପରିଦର୍ଶନକୁ ସ୍ୱାଗତ କରିବେ ।

୯ । ଛାତ୍ରମାନଙ୍କର ଅଭିଭାବକମାନଙ୍କୁ ସଂଗଠିତ କରି ସେମାନଙ୍କ ସହଯୋଗ ଲାଭ କରିବାକୁ ଉଦ୍ୟମ କରିବେ ।

୧୦ । ସହକାରୀ ଶିକ୍ଷକମାନଙ୍କୁ ଛାତ୍ରମାନଙ୍କ ସମ୍ମୁଖରେ କେବେ ଅପମାନିତ କରିବେ ନାହିଁ ।

୧୧ । ଛାତ୍ରମାନଙ୍କର ବିଭିନ୍ନ କାର୍ଯ୍ୟକଳାପରେ ଯେତେଦୂର ସମ୍ଭବ ଆଗଭର ହୋଇ ଅଂଶ ଗ୍ରହଣ କରିବେ ।

୧୨ । ଶିକ୍ଷକ ଓ ଛାତ୍ରମାନଙ୍କ ବ୍ୟକ୍ତିଗତ ପରିଚୟ ଲାଭ କରିବାକୁ ସଚେଷ୍ଟ ରହିବେ ।

୧୩ । ଛାତ୍ରମାନଙ୍କୁ କେବଳ ପରୀକ୍ଷା ପାଇଁ ପ୍ରସ୍ତୁତ କରିବା, ଶିକ୍ଷା ଦାନର ଉଦ୍ଦେଶ୍ୟ ନୁହେଁ । ସେମାନେ କିପରି ପୂର୍ଣ୍ଣାଙ୍ଗ ମାନବ ଓ ସୁନାଗରିକ ହେବେ—ସେଥିପ୍ରତି ସେ ସଜାଗ ରହିବେ ।

---

# ଶୃଙ୍ଖଳା ଓ ଆତ୍ମ-ଶୃଙ୍ଖଳା

ଶିଶୁ ସମସ୍ତ ମନ୍ଦ ପ୍ରବୃତ୍ତିର ଆଧାର ବୋଲି ପୂର୍ବେ ବିଶ୍ବାସ କରିଯାଉଥିବାରୁ ତାହାର ସମସ୍ତ ସ୍ୱାଧୀନ କାର୍ଯ୍ୟକଳାପକୁ ଚାପି ଦିଆଯାଉଥିଲା । ଏହା ଫଳରେ ବୟସ୍କ ଓ ଶିଶୁ ମଧ୍ୟରେ ଅନବରତ ଏକ ସଂଘର୍ଷ ଲାଗି ରହୁଥିଲା;ତେଣୁ ଶୃଙ୍ଖଳା ନାମରେ ଶିଶୁର ଗୋଡ଼ ହାତରେ ଶୃଙ୍ଖଳର ବନ୍ଧନ ବାନ୍ଧି ଦେବା ହିଁ ସାର ହେଉଥିଲା । କିନ୍ତୁ ସୁଶୃଙ୍ଖଳ ସ୍ୱାଧୀନତା ବ୍ୟତୀତରେ ଶିଶୁର ବିକାଶ ବାଧାପ୍ରାପ୍ତ ହେବା ସୁନିଶ୍ଚିତ । ଶିଶୁର ସ୍ୱାଧୀନ ବିକାଶ ସାଧନ ହିଁ ଆମର ଲକ୍ଷ୍ୟ; ତାହାର ସମସ୍ତ ସ୍ୱାଧୀନ ପ୍ରବୃତ୍ତିକୁ ଚପି ମାରିଦେବା ନୁହେଁ । ଶିଶୁ ତାହାର ସ୍ୱାଧୀନ ପ୍ରବୃତ୍ତି ଜରିଆରେ ହିଁ ନିଜେ ନିଜକୁ ଗଢ଼େ । କିନ୍ତୁ ଅଜ୍ଞାତ ବଶତଃ ଆମେ ବୟସ୍କମାନେ ଶିଶୁର ଏହି ସ୍ୱୟଂ-ନିର୍ମାଣ କାର୍ଯ୍ୟରେ ସହାୟକ ହେବା ଦୂରେ ଥାଉ, ବରଂ ଶୃଙ୍ଖଳା ନାମରେ ସେଥିରେ ସମସ୍ତ ପ୍ରକାର ବାଧାବନ୍ଧନ ସୃଷ୍ଟି କରୁ । ତେଣୁ ଶୃଙ୍ଖଳା ସମ୍ପର୍କରେ ଆମର ଭ୍ରାନ୍ତ ଧାରଣା ଯେତେ ଶୀଘ୍ର ବଦଳେ, ଦେଶ ଓ ଜାତି ପକ୍ଷରେ ତାହା ସେତେ ମଙ୍ଗଳପ୍ରଦ ।

ଶିଶୁର ସ୍ୱାଧୀନ କାର୍ଯ୍ୟ କଳାପକୁ ବାଧା ନ ଦେଇ ତାହାକୁ ସୁନିୟନ୍ତ୍ରିତ କରିବା ଶିକ୍ଷକ ହିସାବରେ ଆମର କାମ । ସେ ବିପଥ-

ଗାମୀ ହେଲେ ତାହାକୁ ବୁଝାଇ ସୁଝାଇ ଅବଶ୍ୟ ବାଟକୁ ନେଇ ଆସିବାକୁ ହେବ । କିନ୍ତୁ ଦୁନିଆଁ ସମ୍ପର୍କରେ ଶିଶୁର ଅଭିଜ୍ଞତା ନ ଥିବାରୁ ସେ ଭଲମନ୍ଦ, ନ୍ୟାୟାନ୍ୟାୟ ଭିତରେ କୌଣସି ପାର୍ଥକ୍ୟ ଦେଖିପାରେ ନାହିଁ । ତେଣୁ ପ୍ରଥମେ ଶିଶୁର ନୈତିକ ଶକ୍ତିର ବିକାଶ ସାଧନା କରିବାକୁ ହେବ । ସେ ଭଲମନ୍ଦ ବିଚାର କରି ଶିଖିବା ଉଚିତ । ତାହାର ଦୋଷ ତ୍ରୁଟିର ଅପକାରିତା ଓ କୁଫଳ ତାହାକୁ ଧୈର୍ଯ୍ୟ ସହକାରେ ବୁଝାଇ ଦେବାକୁ ହେବ । କେବଳ ଶାସ୍ତି-ବିଧାନ ଦ୍ୱାରା କୌଣସି ସୁଫଳ ଫଳେ ନାହିଁ । ଆମେ ବୟସ୍କ-ମାନେ ଶିଶୁର ଦୃଷ୍ଟିରେ ସବୁକଥା ବିଚାର ନ କରି ବୟସ୍କର ଦୃଷ୍ଟିରେ ଶିଶୁ-ସମ୍ପର୍କୀୟ ସମସ୍ତ ବିଷୟର ବିଚାର କରୁଥିବାରୁ ହିଁ ଭୁଲ୍ କରି ବସୁ । ଶିଶୁ ଯେପରି ଭୁଲ୍ କରେ, ଆମେ ଆମର ପିଲାଦିନେ ମଧ୍ୟ ଅବିକଳ ସେହି ରକମର ଭୁଲ୍ ଭଟକା କରୁଥିଲୁ । ଏପରି କାହିଁକି ଘଟେ ? ଶିଶୁର ସମସ୍ତ କାର୍ଯ୍ୟ ପ୍ରବୃତ୍ତି-ପରିଚାଳିତ । ପ୍ରବୃତ୍ତି ପରିଚାଳିତ କାର୍ଯ୍ୟରେ ବାଧା ସୃଷ୍ଟି ନ କରି ତାହାକୁ ସୁପରିଚାଳିତ କରିବାକୁ ହେବ । ଏ ସମ୍ପର୍କରେ ଆମେ ବୟସ୍କମାନେ ଧୀରସ୍ଥିର ଭାବରେ ଚିନ୍ତାକରି ଶିଶୁକୁ ସୁଧାରିବାର ବାଟ ଠିକ୍ କରିନେବା ଉଚିତ ।

ପ୍ରଥମାବସ୍ଥାରୁ ଶିଶୁର ନିୟମିତ ଜୀବନଯାପନ ଓ ସଦଭ୍ୟାସ-ଗଠନ ଉପରେ ବିଶେଷ ଗୁରୁତ୍ୱ ଦେବାକୁ ହେବ । ପାରିବାରିକ ଜୀବନରେ ବାପମା'ମାନେ ଯଦି ଏହି ବିଷୟ ପ୍ରତି ଦୃଷ୍ଟିଦେଇ ଶିଶୁପାଳନ କରିବେ, ତା'ହେଲେ ଶିଶୁମାନେ ଆପେ ଆପେ ସୁଶୃଙ୍ଖଳ ହୋଇ ଗଢ଼ି ଉଠିବେ । ଗାଧୋଇବା ଶୋଇବା, ଉଠିବା, ଖାଇ-ବାରେ ଶିଶୁ ଯଦି ନିୟମିତ ନୁହେଁ, ତା'ହେଲେ ପର ଜୀବନରେ ତା'ଠାରୁ ଶୃଙ୍ଖଳା ଆଶା କରିବା ସମୀଚୀନ ହେବ ନାହିଁ । ତେଣୁ

ଶିଶୁର ବିଶୃଙ୍ଖଳ ଜୀବନ ପାଇଁ ବାପ-ମା'ଙ୍କୁ ବିଶେଷ ଭାବରେ ଦାୟୀ ।

ଶୈଶବାବସ୍ଥା ସଦଭ୍ୟାସ ଗଠନ ପାଇଁ ବିଶେଷ ଅନୁକୂଳ । ଶୈଶବାବସ୍ଥାରେ ସ୍ନାୟୁଶକ୍ତି ସ୍ଥିତିସ୍ଥାପକତ୍ୱ (Nervous Elasticity) ଗୁଣ ହେତୁ ଶିଶୁ ଯେଉଁ ଅଭ୍ୟାସ ପାଏ, ତାହା ତା'ର ଜୀବନ ତମାମ୍ ରହିଯାଏ । ଅନୁକରଣ ଶିଶୁର ଏକ ପ୍ରଧାନ ପ୍ରବୃତ୍ତି । ତେଣୁ ଏକ ଶୃଙ୍ଖଳିତ ଓ ଶାନ୍ତ,ସଂଯତ ବାତାବରଣ ମଧ୍ୟରେ ଯଦି ଶିଶୁ ଲାଳିତ ପାଳିତ ହୁଏ, ତା'ହେଲେ ପର ଜୀବନରେ ଶୃଙ୍ଖଳା ଶିକ୍ଷାର କୌଣସି ଆବଶ୍ୟକତା ପଡ଼େ ନାହିଁ ।

ବିଦ୍ୟାଳୟ-ଜୀବନରେ ଭଲମନ୍ଦ ବିଚାର କରି ସ୍ୱାଧୀନ-ଭାବରେ କାମ କରିବାର ଦାୟିତ୍ୱ ଛାତ୍ରମାନେ ବହନକରିବା ଉଚିତ । ସମସ୍ତ ସମସ୍ୟାର ସମାଧାନ ଶିକ୍ଷକମାନଙ୍କ ଦ୍ୱାରା କରାଗଲେ ଶିଶୁର ସ୍ୱାଧୀନ ବିଚାରଶକ୍ତିର ବିକାଶ ଆଦୌ ସମ୍ଭବ ନୁହେଁ । ଏହି ଶକ୍ତି ବିକାଶପ୍ରାପ୍ତ ନ ହେବା ଦ୍ୱାରାହିଁ ଶିଶୁ କେବଳ ପରମୁଖାପେକ୍ଷୀ ହୋଇ ଗଢ଼ିଉଠେ । ଫଳରେ ପରେ ନାଗରିକ ଭାବରେ ସେ ଯାହା କରିବ-ସେ, ସେଥିରେ ସେ ପ୍ରାୟ ଭୁଲ୍ ହିଁ କରିଥାଏ । ଭଲମନ୍ଦ ବିଚାର-ଶକ୍ତିର ଅଭାବରୁ ଏପରି ଘଟିଥାଏ । ତେଣୁ ଶିଶୁର ସମସ୍ତ ସ୍ୱାଧୀନ କାର୍ଯ୍ୟକଳାପକୁ ଉତ୍ସାହିତ କରିବାକୁ ହେବ । ଭୁଲ୍ କରି ବସିଲେ ପ୍ରଥମରୁ ବାଧା ନ ଦେଇ ତା'ର କାର୍ଯ୍ୟ ଉପରେ ସତର୍କ ଦୃଷ୍ଟି ରଖିବାକୁ ହେବ । ଭୁଲ୍ ବିଚାର ଓ କାର୍ଯ୍ୟର କୁଫଳ ଶିଶୁ ଅନୁଭବ କରିବାକୁ ଅବସର ପାଇବା ଉଚିତ । ଏହାର ଫଳରେ ହିଁ ତାହାର ସ୍ୱାଧୀନ ବିଚାର ଓ ନୈତିକ ଶକ୍ତିର ସ୍ୱାଭାବିକ ବିକାଶ ସମ୍ଭବ ହେବ ।

ଶିଶୁମାନେ ସେମାନଙ୍କ ନିଜ ନିଜର ବାଦ ବିବାଦ ନିଜ ମଧ୍ୟରେ ତୁଟାଇବା ଉଚିତ । ଏହା ଫଳରେ କେଉଁ କାର୍ଯ୍ୟ କରିବା ଉଚିତ ବା ଅନୁଚିତ, ତାହା ବିଚାର କରିବାର ଅବକାଶ ସେମାନେ ଲାଭ କରିବେ । ଦୈନନ୍ଦିନ ଜୀବନର ବାଛ ବିଚାରରେ ଶିଶୁ, ସକ୍ରିୟ ଭାଗ ଗ୍ରହଣ କରିବା ଉଚିତ । ନୈତିକ ଶିକ୍ଷା ସମ୍ପର୍କରେ ଛାତ୍ରମାନଙ୍କୁ କେବଳ ବକ୍ତୃତା ଦେଇ ସନ୍ତୁଷ୍ଟ ରହିବା ଅପେକ୍ଷା ବାସ୍ତବ ଜୀବନ ଉପଯୋଗୀ ଶିଖାଦେବା ଶତଗୁଣରେ ଶ୍ରେୟସ୍କର ।

ବାହ୍ୟ ଶୃଙ୍ଖଳାର ଚାପରେ ମନୁଷ୍ୟ ଏକ ନିର୍ଦ୍ଦିଷ୍ଟ ସମୟ ଓ ସ୍ଥଳ ବିଶେଷରେ ସତର୍କ ହୋଇ ଚଳେ; କିନ୍ତୁ ଏହା ତା'ର ସ୍ୱାଧୀନ ଜୀବନକୁ ପ୍ରଭାବିତ କରି ପାରେନାହିଁ । ସ୍ୱତଃପ୍ରବୃତ୍ତ କାର୍ଯ୍ୟହିଁ ଜୀବନକୁ ଶୃଙ୍ଖଳିତ କରେ । କୌଣସି ବ୍ୟକ୍ତି ସ୍ୱେଚ୍ଛା-ପ୍ରଣୋଦିତ ହୋଇ ଯେଉଁ ଦାୟିତ୍ୱ ହାତକୁ ନିଏ, ସେ ତାହାକୁ ନେଇ ଅଣି ଥୋଇବାକୁ ମନପ୍ରାଣ ଢାଳିଦିଏ । ତେଣୁ ଛାତ୍ରକୁ ଅଖଣ୍ଡ ଦାୟିତ୍ୱ ଦେବାକୁ ହେବ । ନିତିଦିନିଆ ଜୀବନର ସମସ୍ତ ଦାୟିତ୍ୱ ସେ ସ୍ୱାଧୀନ ଭାବରେ ନେଇ ଅଣି ଥୋଇବାକୁ ସୁଯୋଗ ଲାଭ କରିବ ।

କାର୍ଯ୍ୟକୁ ସୁସମ୍ପାଦନ କରିବା ପାଇଁ ଛାତ୍ର ନିଜେ ନିଜର ଯୋଜନା ପ୍ରସ୍ତୁତ କରିବ । ଏଥିରେ ଶିକ୍ଷକ କୌଣସି ପ୍ରକାରର ବାହ୍ୟ ଚାପ ପକାଇବେ ନାହିଁ । ସେ କେବଳ ନୀରବ ଦ୍ରଷ୍ଟା, ଉପଦେଶଦାତା ଓ ସହାୟକର କାର୍ଯ୍ୟ କରିବେ । ଶିଶୁ ଅଜ୍ଞତା-ବଶତଃ ବିଶେଷ ଭୁଲ୍ କରିବସିଲେ ସେ ପାଖେ ପାଖେ ଥାଇ ଭୁଲ ଓ ଖରାପର ପରିଣତି ତା'ର ହୃଦ୍‌ବୋଧ କରାଇ ଦେବେ । ଏହିପରି ଦାୟିତ୍ୱ-ପ୍ରେରିତ ହୋଇ ଶିଶୁ ନିଜେ ନିଜେ ଯେଉଁ ଶୃଙ୍ଖଳାର ବନ୍ଧନରେ ସ୍ୱତଃ ବାନ୍ଧି ହୋଇଯାଏ, ତାହାକୁହିଁ ଆତ୍ମ-

ଶୃଙ୍ଖଳା କୁହାଯାଏ । ଆତ୍ମ-ଶୃଙ୍ଖଳା ବାହ୍ୟ-ଶୃଙ୍ଖଳାଠାରୁ ଶତ ଗୁଣରେ ଶ୍ରେୟଃ । ଏହା ଜୀବନର ପ୍ରତ୍ୟେକ ଦିଗକୁ ପ୍ରଭାବିତ କରେ ।

ସ୍ୱାଧୀନତା ଜୀବନରେ କାମ୍ୟ; କିନ୍ତୁ ଦୁନିଆଁରେ ଅଖଣ୍ଡ ସ୍ୱାଧୀନତା ବୋଲି କିଛି ନାହିଁ । ବିବେକର ତାଡ଼ନାହିଁ ସ୍ୱେଚ୍ଛାଚାରୀ ଜୀବନକୁ ଶୃଙ୍ଖଳିତ କରେ । ଜୀବନର ସର୍ବାଙ୍ଗୀନ ବିକାଶ ପାଇଁ ସ୍ୱାଧୀନତା ଓ ଶୃଙ୍ଖଳା ଉଭୟ ଆବଶ୍ୟକ । କୃଷୀ ଶ୍ରାବଣର ଶତଧାର ଓ ଖରାତରା ଭୁଲି କୃଷି କାର୍ଯ୍ୟରେ ଲାଗିଯାଏ; କିନ୍ତୁ ଏଥିପାଇଁ ସେ କୌଣସି ବାହ୍ୟ ନିର୍ଦ୍ଦେଶ ପାଇ ନ ଥାଏ । ବିବେକର ତାଡ଼ନା ଓ ଦାୟିତ୍ୱବୋଧ ଫଳରେହିଁ ସେ ଦିନରାତି କାମରେ ଲାଗିଥାଏ । ଏଭଳି କାର୍ଯ୍ୟ ବାହ୍ୟ ଚାପ ବା ଦଣ୍ଡ ଭୟ ପ୍ରଦର୍ଶନରେ କେବେ ସମ୍ଭବ ନୁହେଁ । ତେଣୁ ସୁଶୃଙ୍ଖଳ ସ୍ୱାଧୀନତା ( **Well-regulated liberty**) ଦ୍ୱାରା ହିଁ ବ୍ୟକ୍ତିତ୍ୱର ସର୍ବାଙ୍ଗୀନ ବିକାଶ ସମ୍ଭବ ।



# ଛାତ୍ର ସଭା ଓ ମନ୍ତ୍ରୀମଣ୍ଡଳ

ଛାତ୍ରମାନେ ବିଦ୍ୟାଳୟର ଶାସନ ଓ ଶୃଙ୍ଖଳା ବ୍ୟବସ୍ଥାରେ ଅଧିକରୁ ଅଧିକ ଭାଗ ନେବା ଉଚିତ । ଏହା ଫଳରେ ଭବିଷ୍ୟତରେ ଦେଶର ଶାସନ-ଦାୟିତ୍ୱ ଗ୍ରହଣ କରିବାକୁ ସେମାନେ ସମର୍ଥ ହେବେ । ବିଦ୍ୟାଳୟ କେବଳ ପ୍ରଧାନ ଶିକ୍ଷକ ବା ଶିକ୍ଷକମଣ୍ଡଳର ନୁହେଁ; ଏହା ବି ଛାତ୍ରମାନଙ୍କର । ଛାତ୍ରମାନେ ଯେପରି ବିଦ୍ୟାଳୟକୁ ଆପଣାର ମନେକରି ଏହାର ସର୍ବାଙ୍ଗୀନ ଉନ୍ନତି ପାଇଁ ପ୍ରାଣମୂର୍ଚ୍ଛା ଲଗି ପଡ଼ିବେ—ସେଥିପାଇଁ ବିଦ୍ୟାଳୟରେ ଗଣତନ୍ତ୍ର ଶାସନ ବ୍ୟବସ୍ଥା ପ୍ରଚଳନ କରିବାର ଉଦ୍ୟମ ହେଉଛି । ଭାରତର ଗଣତନ୍ତ୍ର ବ୍ୟବସ୍ଥାକୁ ଫଳପ୍ରସୂ ଓ ଗାର୍ହସ୍ଥ୍ୟ କରିବାକୁ ହେଲେ ବିଦ୍ୟା-ଳୟରେ ମଧ୍ୟ ଅନୁରୂପ ପରିଚାଳନା-ବ୍ୟବସ୍ଥା ପ୍ରୟୋଗ କରିବାକୁ ହେବ । ଗଛ ଅନୁସାରେହିଁ ଫଳ । ବିଦ୍ୟାଳୟର ଏକତନ୍ତ୍ର ବ୍ୟବସ୍ଥାରୁ ଉତ୍ତରି ଦେଶର ଗଣତନ୍ତ୍ର-ଦାୟିତ୍ୱ ତୁଲାଇବା ଛାତ୍ର-ସମାଜ ପକ୍ଷରେ ଆଦୌ ସମ୍ଭବ ନୁହେଁ ।

ପ୍ରତ୍ୟେକ ବିଦ୍ୟାଳୟରେ ଗୋଟିଏ ଗୋଟିଏ ଛାତ୍ରସଭା ରହିବ । ବିଦ୍ୟାଳୟର ସମସ୍ତ ଛାତ୍ର ଏଥିରେ ସଭ୍ୟ ରହିବେ । କିନ୍ତୁ ବହୁ ସଂଖ୍ୟକ ଛାତ୍ରଥିବା ବିଦ୍ୟାଳୟରେ ପ୍ରତ୍ୟେକ ଶ୍ରେଣୀରୁ

କେତେଜଣ ଲେଖାଏଁ ଛାତ୍ର-ପ୍ରତିନିଧି ନିର୍ବାଚିତ ହୋଇ ଏହି ସଭାର ସଭ୍ୟ ରହିବେ । ଏହି ସଭାର କାର୍ଯ୍ୟକାଳ ଏକ ବର୍ଷ ହେବ । ସଭ୍ୟମାନଙ୍କ ମଧ୍ୟରୁ ଜଣେ ସଭାପତି ନିର୍ବାଚିତ ହେବେ ଓ ସେ ଛାତ୍ରସଭାର ସମସ୍ତ ଦାୟିତ୍ୱ ତୁଲାଇବେ । ସଭାପତି ମଧ୍ୟ ଛାତ୍ରସଭାର ଅବାହକ ରୂପେ କାମ କରିବେ । କିନ୍ତୁ ଏକ ନିର୍ଦ୍ଦିଷ୍ଟ ସଂଖ୍ୟକ ସଭ୍ୟ ଚାହିଁଲେ ଯେକୌଣସି ଛୁଟି ଦିନରେ ସଭାପତିଙ୍କ ସମ୍ମତିକ୍ରମେ ଛାତ୍ରସଭା ଆହୂତ ହୋଇପାରେ ।

ବିଦ୍ୟାଳୟର ଗଣତନ୍ତ୍ର-ଶାସନରେ ବିରୋଧୀ ଦଳର ସ୍ଥାନ ନାହିଁ । ଏହା ଫଳରେ ବିଦ୍ୟାଳୟ ଠିକ୍ ଏକ ପରିବାର ପରି ପରିଚାଳିତ ହେବ । ବିରୋଧ ପାଇଁ ବିରୋଧ କରିବାର ଖରାପ ଅଭ୍ୟାସ ଛାତ୍ରମାନଙ୍କ ମଧ୍ୟରେ ଯେପରି ଶୁଣା ନ ଯାଏ, ସେଥିପ୍ରତି ପ୍ରଧାନ ଶିକ୍ଷକ ମହୋଦୟ ବିଶେଷ ସତର୍କ ହେବା ଉଚିତ । ଛାତ୍ର-ମାନେ ଯେପରି ନିର୍ଭୀକ, ସମାଲୋଚକ ଓ ସ୍ପଷ୍ଟବାଦୀ ହୁଅନ୍ତି, ସେଥିପ୍ରତି ଦୃଷ୍ଟି ଦେବାକୁ ହେବ । ସମାଲୋଚନା ଅର୍ଥ କେବଳ ଦୋଷ ଦର୍ଶାଇବା ନୁହେଁ । ଗୁଣ ଓ ଦୋଷ, ଭଲ ଓ ମନ୍ଦ ଉଭୟର ସମ୍ୟକ୍ ଆଲୋଚନା କରିବା ସଙ୍ଗେ ସଙ୍ଗେ, ଗଠନମୂଳକ ପ୍ରସ୍ତାବ ଦେବା, ସମାଲୋଚନାର ଉଦ୍ଦେଶ୍ୟ । ଯାହା ଯେପରି, ତାକୁ ସେହିପରି ଫୁଟାଇ ଦେଖିବାକୁ ହେବ । କିନ୍ତୁ ଗଣତନ୍ତ୍ର-ଶାସନର କୁଫଳ ସ୍ୱରୂପ ଆମ ଦେଶରେ କେବଳ ବିରୋଧ, କୁତ୍ସାରଟନା, ବ୍ୟକ୍ତିଗତ ଆକ୍ରୋଶର ଏକ ତିକ୍ତ ବାୟୁମଣ୍ଡଳ ଖେଳିବାକୁ ଆରମ୍ଭ କରିଛି । ଭାରତରେ ଗଣତନ୍ତ୍ରର ଯେଉଁ ବିରାଟ ପରୀକ୍ଷା ଚାଲିଛି— ଆମର ବିଦ୍ୟାଳୟସବୁ ସେ ଦିଗରେ ଦେଶକୁ ଦିଗଦର୍ଶନ ଦେବାକୁ ସମର୍ଥ ହେବା ଉଚିତ । ଏହି ଦୃଷ୍ଟିରୁ ଗାନ୍ଧିକଳ୍ପିତ ଗଣତନ୍ତ୍ର ବିରୋଧ ଉପରେ ପ୍ରତିଷ୍ଠିତ ନ ହୋଇ ସତ୍ୟ ଓ ପ୍ରେମର ସୁଦୃଢ଼ ଭିତ୍ତି ଉପରେ

ସୁପ୍ରତିଷ୍ଠିତ ହେବ ।

ଲୋକପ୍ରିୟ ଓ ସୁଦକ୍ଷ ଛାତ୍ର-ପ୍ରତିନିଧିମାନେ ପ୍ରତି ମାସରେ ନିର୍ବାଚିତ ହୋଇ ଗୋଟିଏ ମନ୍ତ୍ରୀମଣ୍ଡଳ ଗଠନ କରିବେ । ସେମାନଙ୍କ ମଧ୍ୟରେ ଜଣେ ମୁଖ୍ୟ ମନ୍ତ୍ରୀ ( ବା ମୁଖ୍ୟ ସେବକ ) ରହିବେ । ସେ ଛାତ୍ରସଭାର ଦଳପତି ରୂପେ ବିବେଚିତ ହେବେ । ମନ୍ତ୍ରୀମଣ୍ଡଳକୁ ବିଦ୍ୟାଳୟର ପ୍ରଧାନ ଗୁରୁଜୀ ଶପଥ ପାଠ କରାଇବେ । ବିଦ୍ୟାଳୟ, ପ୍ରଧାନ ଗୁରୁଜୀ ଓ ଗୁରୁଜୀ ମଣ୍ଡଳ ପ୍ରତି ଅନୁରକ୍ତ ରହି ବିଦ୍ୟାଳୟର ସେବା କରିବା ପାଇଁ ସେମାନେ ଶପଥ ନେବେ । ବିଦ୍ୟାଳୟର ପ୍ରଧାନ ଶିକ୍ଷକ ରାଜ୍ୟର ରାଜ୍ୟପାଳ ଭଳି କାମ କରିବେ । ଛାତ୍ର-ସଭାରେ ବହୁ ମତରେ ଯେଉଁ ପ୍ରସ୍ତାବ ଧାର୍ଯ୍ୟ ହେବ, ତାହା ପ୍ରଧାନ ଶିକ୍ଷକଙ୍କର ସମର୍ଥନ ବିନା ଆଦୌ କାର୍ଯ୍ୟକାରୀ କରାଯାଇ ପାରିବ ନାହିଁ । ତେଣୁ ବିଦ୍ୟାଳୟ-ଜୀବନରେ ଗଣତନ୍ତ୍ର-ଶାସନର ପ୍ରବର୍ତ୍ତନ ଦ୍ୱାରା ସଂଘର୍ଷ ସୃଷ୍ଟି ହେବାର କୌଣସି ଆଶଙ୍କା ନାହିଁ । ଶିକ୍ଷକ ଓ ଛାତ୍ରମାନେ ମିଳିମିଶି ସହଯୋଗ ସୂତ୍ରରେ ବିଦ୍ୟାଳୟକୁ ଏକ ଆଦର୍ଶ ପରିବାରରେ ପରିଣତ କରିବା ଓ ଏହାର ଉତ୍ତରୋତ୍ତର ଉନ୍ନତି ସାଧନରେ ବ୍ରତୀ ହେବା, ଏହାର ମୂଳ ଉଦ୍ଦେଶ୍ୟ ।

ମନ୍ତ୍ରୀମଣ୍ଡଳର ସଭ୍ୟମାନେ ଛାତ୍ର ଭାଇମାନଙ୍କ ଦ୍ୱାରା ସମ୍ମାନିତ ହେବେ । ସେମାନଙ୍କ ଆଦେଶ ମାନି କାମ କରିଯିବାକୁ ସାଧାରଣ ଛାତ୍ରମାନେ କୁଣ୍ଠା ବୋଧ କରିବା ଅନୁଚିତ । ମୋଟ ଉପରେ ବିଦ୍ୟାଳୟର ସାଧାରଣ ଜୀବନ ମଧ୍ୟ ଗଣତାନ୍ତ୍ରିକ ଭିତ୍ତିରେ ପ୍ରତି-ଷ୍ଠିତ ହେବ । ଅନ୍ୟ ପକ୍ଷରେ ମନ୍ତ୍ରୀମାନେ କେବଳ ନିର୍ଦ୍ଦେଶ ନ ଦେଇ, ଦୃଷ୍ଟାନ୍ତ ଦ୍ୱାରା ଛାତ୍ରମାନଙ୍କୁ ଉଦ୍‌ବୁଦ୍ଧ କରିବେ । ଛାତ୍ରମାନେ ମଧ୍ୟ ଆସ୍ତେ ଆସ୍ତେ ଉତ୍ତମ ପ୍ରତିନିଧି ଓ ମନ୍ତ୍ରୀମଣ୍ଡଳ ନିର୍ବାଚନ କରି-ବାକୁ ସମର୍ଥ ହେବେ । ଏହାର ସୁଫଳ ସ୍ୱରୂପ ଧିରେ ଦେଶରେ

ଯୋଗ୍ୟ ଲୋକ-ପ୍ରତିନିଧିମାନେହିଁ ଗଣତନ୍ତ୍ର-ଶାସନର ଦାୟିତ୍ୱ ବହନ କରିବା ସକାଶେ ନିର୍ବାଚିତ ହୋଇ ପାରିବେ ।

ବିଦ୍ୟାଳୟରେ ସ୍ୱାୟତ୍ତଶାସନ ବ୍ୟବସ୍ଥାର ପ୍ରୟୋଗ ଫଳରେ, ଶିକ୍ଷକ ଅନେକ ଦାୟିତ୍ୱରୁ ମୁକ୍ତହେବା ସଙ୍ଗେ ସଙ୍ଗେ ଛାତ୍ରମାନେ ମଧ୍ୟ କେତେକାଂଶରେ ମୁକ୍ତି ଲାଭ କରିବେ । ଆଉ ଏହାର ସୁଫଳ ସ୍ୱରୂପ ଛାତ୍ରମାନେ ନିଜର ନୈତିକ ଚେତନା ଓ ବିବେକ ଜ୍ଞାନର ଅଧୀନ ହୋଇ ବିଭିନ୍ନ ଦାୟିତ୍ୱ ତୁଲାଇବାକୁ ଶିଖିବେ । ବିଦ୍ୟାଳୟ ରୂପକ ରାଜ୍ୟରେ ଛାତ୍ରମାନେହିଁ ସର୍ବେସର୍ବା ହେବେ । ନିର୍ବାଚକ ଓ ନିର୍ବାଚିତମାନେ ନିଜର କର୍ତ୍ତବ୍ୟ ତୁଲାଇବା ସକାଶେ ଗମ୍ଭୀର ଓ ଦାୟିତ୍ୱଜ୍ଞାନସମ୍ପନ୍ନ ହେବେ । ଏହା ଫଳରେ ଛାତ୍ରମାନେ ସର୍ବୋଚ୍ଚ ସ୍ତରରେ ନାନାବିଧ ନାଗରିକ ଜ୍ଞାନ ଲାଭ କରିବାକୁ ସମର୍ଥ ହେବେ ।

ଏ ସମ୍ପର୍କରେ ଶିଶୁମାନଙ୍କ ଖେଳ କୌତୁକରୁ ଅନେକ କଥା ଶିଖିବାର ଅଛି । ଖେଳର ନିୟମ ଶିଶୁମାନେ ହିଁ ଗଢ଼ନ୍ତି ଓ ସେସବୁ ମାନି ଚଳିବାକୁ ଭଲପାଆନ୍ତି । ଖେଳରେ ହାରିଗଲେ ଛାତ୍ରମାନେ ଗୁହମଡ଼ା ହେବାକୁ ବା ମାଡ଼ ଖାଇବାକୁ ଆଦୌ କୁଣ୍ଠାବୋଧ କରନ୍ତି ନାହିଁ । କିନ୍ତୁ ଅନ୍ୟ ସମୟରେ ସାମାନ୍ୟ ଅନ୍ୟାୟ ଓ ଅପମାନକୁ ସେମାନେ ବରଦାସ୍ତ କରନ୍ତି ନାହିଁ । ଏହି ଦୃଷ୍ଟାନ୍ତରୁ ନୀତି ଓ ନିୟମ ପ୍ରତି ଶିଶୁମାନଙ୍କର ସ୍ୱାଭାବିକ ମମତା ପରିସ୍ଫୁଟ ହୋଇଉଠେ । ତେଣୁ ବିଦ୍ୟାଳୟର ସଂବିଧାନ- ଗଠନରେ ଛାତ୍ରମାନଙ୍କର କିଛି କିଛି ହାତ ରହିଲେ ଆଉ ବିଶୃଙ୍ଖଳାର ପ୍ରଶ୍ନ ଉଠନ୍ତା ନାହିଁ ।

ବିଦ୍ୟାଳୟରେ ବାସ୍ତବ ସ୍ୱାୟତ୍ତଶାସନ ବ୍ୟବସ୍ଥାର ପ୍ରଚଳନ ଦ୍ୱାରା ଛାତ୍ରମାନେ ଯେଉଁ ନାଗରିକ ଶିକ୍ଷା ଲାଭ କରନ୍ତି, ହଜାରେ ବହି ପଢ଼ି ତାହା ଆଦୌ ସମ୍ଭବ ହୁଏ ନାହିଁ । ଛାତ୍ର ଅଭିଜ୍ଞତାରୁ ଶିଖେ ଯେ, ଅନ୍ୟର ବ୍ୟକ୍ତିଗତ ସ୍ୱାଧୀନତା ଉପଭୋଗ କରିବା

କୌଣସି ନାଗରିକ ପକ୍ଷରେ କେବେ ସମ୍ଭବ ନୁହେଁ । ଅନ୍ୟର ତଥା ସମାଜର ସ୍ୱାଧୀନତାରେ ଅଞ୍ଚ୍‌ ନଆଣି ଯେତକ ସମ୍ଭବ, କେବଳ ସେତକ ବ୍ୟକ୍ତିଗତ ସ୍ୱାଚ୍ଛନ୍ଦ୍ୟ ଓ ସ୍ୱତନ୍ତ୍ରତା ଉପଭୋଗ କରିବାରେ ଆମର ଅବଶ୍ୟ ଅଧିକାର ରହିଛି । ଅଳ୍ପେ ଅଳ୍ପେ ଛାତ୍ର ଉପଲବ୍ଧି କରେ ଯେ ନିଜର ଦାୟିତ୍ୱ ସମ୍ପାଦନକରିବା ଦ୍ୱାରାହିଁ ଦାବୀ ହାସଲ କରିବାର ଯୋଗ୍ୟତା ଲାଭ କରାଯାଏ । ଦାୟିତ୍ୱ ବ୍ୟତୀତ ଦାବୀର କୌଣସି ମୂଲ୍ୟ ନାହିଁ । ଅଜ ସେ ବୁଝେ ଯେ, ସମାଜର ମଙ୍ଗଳ ପାଇଁ ପ୍ରତ୍ୟେକେ ନ ଲାଗିଲେ ସମାଜ କେବେହେଲେ ଆଗେଇ ପାରେ ନାହିଁ । ତେଣୁ ବ୍ୟକ୍ତିଗତ ଉନ୍ନତି ସହିତ ସମୂହ ଉନ୍ନତି ପାଇଁ ଆମକୁ ନାଗରିକ ହିସାବରେ ଉଦ୍ୟମ କରିବାକୁ ହେବ ।

ବିଦ୍ୟାଳୟରେ ସ୍ୱାୟତ୍ତ ଶାସନ ( Self-Govt. ) ବ୍ୟବସ୍ଥାର ଉପଯୋଗିତା ନିମ୍ନରେ ଉଲ୍ଲେଖ କରାଗଲା ।

୧ । ଏହି ବ୍ୟବସ୍ଥା ଶିକ୍ଷକ, ଛାତ୍ର ଓ ବିଦ୍ୟାଳୟ—ସମସ୍ତଙ୍କ ପାଇଁ ମୁକ୍ତିର ପଥ ଖୋଲିଦିଏ ।

୨ । ଛାତ୍ରମାନେ ଶୃଙ୍ଖଳାର ଆବଶ୍ୟକତା ମର୍ମେ ମର୍ମେ ଉପଲବ୍ଧି କରନ୍ତି ।

୩ । ସେମାନଙ୍କର ସ୍ୱାବଲମ୍ବନ-କ୍ଷେତ୍ର ବୃଦ୍ଧି ପାଏ । କୌଣସି ସମସ୍ୟାର ସମାଧାନ ସମ୍ପର୍କରେ ସେମାନେ ଆପଣାର ଶୁଦ୍ଧ ବିଚାରଶକ୍ତି ଉପରେ ନିର୍ଭର କରନ୍ତି । ସେମାନଙ୍କୁ ଅଯଥା ପରମୁଖାପେକ୍ଷୀ ହେବାକୁ ପଡ଼େନାହିଁ ।

୪ । ନିୟମ ଓ ମତର ପ୍ରୟୋଜନୀୟତା ସେମାନେ ଉପଲବ୍ଧି କରନ୍ତି ।

୫ । ବିଦ୍ୟାଳୟର କଲ୍ୟାଣ ପାଇଁ ସେମାନେ ପରସ୍ପରକୁ ସାହାଯ୍ୟ ସହଯୋଗ କରିବାକୁ ଶିଖନ୍ତି ।

୬ । ବ୍ୟକ୍ତିଗତ ସୁଖ ସ୍ୱାଚ୍ଛନ୍ଦ୍ୟ ଓ ସ୍ୱାର୍ଥ ପରତାର କ୍ଷୁଦ୍ର ଗଣ୍ଡି ମଧ୍ୟରୁ ସେମାନେ ସମୃଦ୍ଧ ଜୀବନ ଅଡ଼କୁ ଅଗ୍ରସର ହେବାପାଇଁ ପ୍ରେରଣା ପାଆନ୍ତି ।

୭ । ଭଲମନ୍ଦ ବିଚାରର ସୁଯୋଗ ଲାଭ କରିବାଦ୍ୱାରା ସେମାନଙ୍କ ନୈତିକ ଶକ୍ତିର ବିକାଶ ସମ୍ଭବ ହୁଏ ଓ ଭବିଷ୍ୟତ ଜୀବନ ପାଇଁ ସେମାନେ ପ୍ରସ୍ତୁତ ହୁଅନ୍ତି ।

୮ । ଦାବୀ ଓ ଦାୟିତ୍ୱ ମଧ୍ୟରେ ଏକ ସୁସ୍ଥ ସାଲିସ୍ କରିବାକୁ ସେମାନେ ଶିଖନ୍ତି ।

୯ । ବ୍ୟକ୍ତି ଓ ସମାଜ ଭିତରେ ସୁସମ୍ପୃକ୍ତି, ସେମାନେ ତାହା ଭଲ ଭାବରେ ଉପଲବ୍ଧି କରନ୍ତି ।

୧୦ । ବିଦ୍ୟାଳୟରେ ଆଦର୍ଶ ଗଣତନ୍ତ୍ର-ଶାସନର ଭିତ୍ତି ପତନଦ୍ୱାରା ପରୋକ୍ଷରେ ରାଜ୍ୟରେ ମଧ୍ୟ ତଦନୁରୂପ ଭିତ୍ତିପତନ ସମ୍ଭବ ହୁଏ ।

୧୧ । ଏହି ବ୍ୟବସ୍ଥା ଫଳରେ ଦେଶରେ ଆଦର୍ଶ ନେତୃତ୍ୱ ସୃଷ୍ଟି ହୁଏ ।



# ମନ୍ତ୍ରୀମଣ୍ଡଳର ତାଲିକା ଓ ଦାୟିତ୍ୱ

୧ । **ମୁଖ୍ୟମନ୍ତ୍ରୀ ବା ସେବକ**--ମୁଖ୍ୟମନ୍ତ୍ରୀ ଛାତ୍ର ସଭାରେ ଦଳପତିର କାର୍ଯ୍ୟକରିବେ । ସେ ଜଣେ ଯୋଗ୍ୟ କାର୍ଯ୍ୟଦକ୍ଷ ଓ ଲୋକପ୍ରିୟ ଛାତ୍ର ନେତା ହୋଇଥିବା ଆବଶ୍ୟକ । ମନ୍ତ୍ରୀମଣ୍ଡଳର ବୈଠକ ଡକାଇବା ତାଙ୍କର କାମ । ମନ୍ତ୍ରୀମଣ୍ଡଳ ବୈଠକରେ ସେ ସଭାପତିତ୍ୱ କରିବେ । ସେ ବିଭିନ୍ନ ମନ୍ତ୍ରୀ ଓ ବିଭାଗ ମଧ୍ୟରେ ଯୋଗସୂତ୍ର ପରି କାର୍ଯ୍ୟ କରିବେ । ଛାତ୍ରମାନଙ୍କ ମଧ୍ୟରେ ଶାନ୍ତି-ଶୃଙ୍ଖଳାରକ୍ଷା ତାଙ୍କର ପ୍ରଧାନ କର୍ତ୍ତବ୍ୟ । ମନ୍ତ୍ରୀ-ମାନେ ନିଜ ନିଜର କର୍ତ୍ତବ୍ୟ ଠିକ୍ ଠିକ୍ ତୁଲାଉଛନ୍ତି କି ନାହିଁ ସେଥିପ୍ରତି ମଧ୍ୟ ସେ ସଜାଗ ରହିବେ । ମନ୍ତ୍ରୀମଣ୍ଡଳ ତରଫରୁ କାର୍ଯ୍ୟ-ଯୋଜନା ଓ କାର୍ଯ୍ୟକାଳ ପରେ ଏକ କାର୍ଯ୍ୟ-ବିବରଣୀ ସେ ଛାତ୍ରସଭା ସମକ୍ଷରେ ଉପସ୍ଥାପନ କରି ଗୃହୀତ କରାଇ ନେବେ ।

୨ । **ସଫାଇ-ସେବକ**—ବିଦ୍ୟାଳୟର ପରିଚ୍ଛନ୍ନତା ରକ୍ଷା ସଫାଇ ସେବକଙ୍କର ମୁଖ୍ୟ ଦାୟିତ୍ୱ । ସେ ସଫାଇ ଘଣ୍ଟା ଦେବେ ଓ ଛାତ୍ରମାନଙ୍କର ଉପସ୍ଥାନ ନେବେ । ପାଇଖାନା, ମୂତ୍ରଖାନା, ସାରଖାତ, ଚେଜ୍ଞଖାତ, ଅଳିଆ-ଟିଣ ବା ଟୋକେଇର ରକ୍ଷଣାବେକ୍ଷଣ ଭାର ସେ ବହନ କରିବେ । ମାସ

ଟେଷରେ ସଂଗୃହୀତ ସାର ଓ କସ୍ୱାଇଥିବା ସଫାଇ ଢାମର ହିସାବ ରଖିବେ । ମଝିରେ ମଝିରେ ଗ୍ରାମ-ସଫାଇର ବ୍ୟବସ୍ଥା କରିବା ମଧ୍ୟ ତାଙ୍କର ଦାୟିତ୍ୱ । ସାପ୍ତାହିକ ସଫାଇ କାର୍ଯ୍ୟ ବଣ୍ଟନର ଏକ ତାଲିକା ପ୍ରସ୍ତୁତ କରି ସେ ଛାତ୍ରମାନଙ୍କୁ ତାହା ଜଣାଇ ଦେବେ ।

୩ । **ସ୍ୱାସ୍ଥ୍ୟ-ସେବକ**—ବିଦ୍ୟାଳୟର ସମୂହ ସ୍ୱାସ୍ଥ୍ୟ-ରକ୍ଷା, ସ୍ୱାସ୍ଥ୍ୟ-ସେବକଙ୍କର ପ୍ରଧାନ ଦାୟିତ୍ୱ । ସେ ଏକ ସ୍ୱାସ୍ଥ୍ୟ ଚାର୍ଟ ପୂରଣ କରିବେ ଛାତ୍ରମାନଙ୍କର ଶ୍ରେଣୀ ବାର ନାମ ଉଚ୍ଚତା ଓଜନ, ଛାତିମାପ, ଉଚ୍ଚତା ଅନୁସାରେ ଓଜନ କେତେ କମ୍ ବା ବେଶି, ରୋଗ ଆଦିର ବିବରଣୀ ସେହି ଚାର୍ଟରେ ରହିବ । ପ୍ରତି ମାସର ଆରମ୍ଭରେ ଛାତ୍ରମାନଙ୍କର ସେ ଓଜନ ନେବେ । କୌଣସି ଛାତ୍ର ବେମାର ପଡ଼ିଲେ ତାଙ୍କର ସେବା ଶୁଶ୍ରୂଷାର ବ୍ୟବସ୍ଥା କରିବେ । ଆବାସିକ ବିଦ୍ୟାଳୟ ହୋଇ-ଥିଲେ ସେବାଶୁଶ୍ରୂଷା ଓ ପଥ୍ୟାଦିର ସେ ବ୍ୟବସ୍ଥା କରାଇବେ । ବିଦ୍ୟାଳୟରେ ପାନୀୟ ଜଳର ସୁବ୍ୟବସ୍ଥା କରିବା ତାଙ୍କର ପ୍ରଧାନ କାର୍ଯ୍ୟ । ପ୍ରତ୍ୟେକଦିନ ଛାତ୍ରମାନେ ପରିଷ୍କାର ପରିଚ୍ଛନ୍ନ ବିଦ୍ୟାଳୟକୁ ଆସୁଛନ୍ତି କି ନାହିଁ—ତାହା ସେ ତଦାରଖ କରୁ-ଥିବେ । ଏହା ବ୍ୟତୀତ "ଔଷଧ-ବିଭାଗର" ପୂର୍ଣ୍ଣ ଦାୟିତ୍ୱ ସେ ବହନ କରିବେ ଓ ସମ୍ଭବ ହେଲେ ବିଦ୍ୟାଳୟରେ ଏକ ସ୍ୱାସ୍ଥ୍ୟକୋଣ (Health-corner) ବା ଚିକିତ୍ସା-କେନ୍ଦ୍ରର ବ୍ୟବସ୍ଥା କରିବେ । ଏଠାରେ କେତେକ ସାଧାରଣ ଔଷଧ-ପତ୍ର, ପ୍ରାଥମିକ ଚିକିତ୍ସା-ବାକ୍ସ ଆଦି ଯତ୍ନର ସହିତ ରଖାଯାଇ ଆବଶ୍ୟକତା ବେଳେ ବ୍ୟବହୃତ ହେବ ।

୪ । କୃଷି ମନ୍ତ୍ରୀ ବା ସେବକ—ବଗିଚ୍ଚରେ ଥିବା ବିଭିନ୍ନ ଫସଲର ଦାୟିତ୍ୱ ନେବା କୃଷିମନ୍ତ୍ରୀଙ୍କର ପ୍ରଧାନ କାର୍ଯ୍ୟ ସେ କୃଷି ଘଣ୍ଟାଦେବେ ଓ ଛାତ୍ରମାନଙ୍କର ଉପସ୍ଥାନ ପଚାଇବେ । ମାସିକ କୃଷି-ଯୋଜନାକୁ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ସେ ସମସ୍ତଙ୍କୁ ବିଭିନ୍ନ ଦାୟିତ୍ୱ ବାଣ୍ଟିଦେବେ । ଦଳଗତ ଭାବରେ ବିଭିନ୍ନ କୃଷିକାର୍ଯ୍ୟ କରାଯିବ ଓ ପ୍ରତ୍ୟେକ ଦଳର ଜଣେ ଜଣେ ଦଳନାୟକ ମନୋନୀତ ହେବେ । ଠିକ୍ ସମୟ ମଧ୍ୟରେ କାର୍ଯ୍ୟଟିକୁ ପୂରା କରିବା ଦଳନାୟକଙ୍କର ପ୍ରଧାନ କାମ । କାର୍ଯ୍ୟସାଧନ ପରେ ଉପକରଣ ଗୁଡ଼ିକ ଧୂଆଧୋଇ ଆଣି ଯଥା ସ୍ଥାନରେ ସଜାଡ଼ି ରଖିବାକୁ ହେବ । କୃଷିମନ୍ତ୍ରୀ ତଦାରଖ ଓ ତତ୍ତ୍ୱାବଧାନ କରିବେ । କୃଷିବିଭାଗର ଆୟବୃଦ୍ଧି ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ହେବ । ଏଥିପାଇଁ ବାଡ଼ ବନ୍ଦୀ ଓ ସ୍ଥାୟୀ ଫଳଗଛର ବ୍ୟବସ୍ଥା କରିବା ମଧ୍ୟ ତାଙ୍କର କାମ । ବିଭିନ୍ନ ଫୁଲ ଓ ଫଳଗଛ ଏବଂ ଲତାଦ୍ୱାରା ବିଦ୍ୟାଳୟ-ବଗିଚ୍ଚକୁ ସୁମଣ୍ଡିତ କରିବା ତାଙ୍କର ଏକ ପ୍ରଧାନ କର୍ତ୍ତବ୍ୟ ହେବା ଉଚିତ । ବଗିଚ୍ଚର ଆୟବ୍ୟୟ ବିବରଣୀ ରୀତିମତ ରଖିବାକୁ ହେବ ।

୫ । ଶିଳ୍ପ-ସେବକ—ବିଦ୍ୟାଳୟରେ ବିଭିନ୍ନ ହସ୍ତଶିଳ୍ପ ପ୍ରୟୋଗ କରାଯିବ । ସ୍ଥାନୀୟ ଅବସ୍ଥା ଦୃଷ୍ଟିରୁ ଶିଳ୍ପ ନିର୍ବାଚନ କରାଯିବ । ଏଥିପାଇଁ ସ୍ୱତନ୍ତ୍ର ଶିକ୍ଷକ ରହି ପାରନ୍ତି ବା ମଝିରେ ମଝିରେ ଗ୍ରାମବାସୀଙ୍କର ସାହାଯ୍ୟ ନିଆଯାଇ ପାରେ । ଝାଡ଼ୁ, ପଙ୍ଖା, ମସିଣା, ରସି, ଆସନ ଇତ୍ୟାଦି ନିତ୍ୟ ବ୍ୟବହାର୍ଯ୍ୟ ଘରକରଣା ତିଆରିକରି ବ୍ୟବହାର

କରିବା ଓ ବନ୍ଦୀକର କିଛୁ ଉପାର୍ଜନ କରିବା ପ୍ରତି ଶିଳ୍ପ ସେବକ ବିଶେଷ ଦୃଷ୍ଟି ଦେବେ ଏହା ବ୍ୟତୀତ କପାଗୃହର ଅନୁକୂଳ ପରିସ୍ଥିତି ଥିଲେ, ପ୍ରତ୍ୟେକ ଦିନ ଅଧଘଣ୍ଟାଏ ସୂତା କଟାଯିବ । ଆଖପାଖ ଅଞ୍ଚଳରୁ କଞ୍ଚାମାଲ ଅଣାଇ ଶିଳ୍ପଦ୍ରବ୍ୟ ପ୍ରସ୍ତୁତ କରାଇବାର ଦାୟିତ୍ୱ ମଧ୍ୟ ସେ ବହନ କରିବେ ।

୬ । ଧନ୍ଦା-ସେବକ—ଯେଉଁ କାର୍ଯ୍ୟଦ୍ୱାରା ଛାତ୍ରମାନେ ଭବିଷ୍ୟତ ଜୀବନରେ ଜୀବିକାର୍ଜନକ୍ଷମ ହୁଅନ୍ତି, ତାହାକୁ ଧନ୍ଦା ବା ଉଦ୍ୟୋଗ କୁହାଯାଏ । କାଠକାମ, ବୁଣାଇ, ମିସ୍ତ୍ରୀକାମ, ସିଲାଇ ଆଦି ଏଥିର ଅନ୍ତର୍ଗତ । ଏଥିପାଇଁ ସ୍ୱତନ୍ତ୍ର ଶିକ୍ଷକ ନିଯୁକ୍ତ ହେବେ । ଧନ୍ଦା ସମୟରେ ସେ ବିଭାଗର ମନ୍ତ୍ରୀ ଘଣ୍ଟାଦେବେ ଓ ଉପସ୍ଥାନ ନେବେ । ବଣ୍ଟିତ କାର୍ଯ୍ୟ ବାଣ୍ଟିବା ଓ ଠିକ୍ ନିଖ୍ ହିସାବ ରଖିବା ତାଙ୍କର କାମ । ଧନ୍ଦାରେ ଯେପରି ବିଦ୍ୟାଳୟ ସ୍ୱାବଲମ୍ବନ ହାସଲ କରେ—ସେଥିପ୍ରତି ବିଶେଷ ଦୃଷ୍ଟିଦେବା ଧନ୍ଦାବିଶେଷଜ୍ଞ ଓ ମନ୍ତ୍ରୀଙ୍କର ପ୍ରଧାନ କାମ ।

୭ । ଶ୍ରେଣୀ—ସେବକ—ଶିକ୍ଷକଙ୍କର ଅନୁପସ୍ଥିତି ସମୟରେ ସୋପାନ (ଶ୍ରେଣୀ)ର ଶାନ୍ତିଶୃଙ୍ଖଳା ରକ୍ଷା କରିବା ମନ୍ତ୍ରୀଙ୍କର ପ୍ରଧାନ କର୍ତ୍ତବ୍ୟ । ଶ୍ରେଣୀ ଆରମ୍ଭ ଓ ପରେ ଶ୍ରେଣୀ-କୋଠରୀ ସଫାଇର ଏକ କାର୍ଯ୍ୟ-ବଣ୍ଟନ-ତାଲିକା ସେ 'ନିର୍ଦ୍ଦେଶ -ପଟା'ରେ ମାରିଦେବେ । ପାଠାରମ୍ଭ ପୂର୍ବରୁ ଶ୍ରେଣୀ ସଜ୍ଜା ପ୍ରତି ସବିଶେଷ ଦୃଷ୍ଟି ଦେବେ । ଗୁରୁଜୀଙ୍କ ନିର୍ଦ୍ଦେଶ ଅନୁସାରେ ସେ ଦୈନିକ ଉପସ୍ଥାନ ଗ୍ରହଣ କରିବେ । ଓ କଳାପଟାର ଏକ କୋଣରେ ତାରିଖ; ବାର ଓ ସେଦିନର ଉପସ୍ଥାନ ଉଲ୍ଲେଖ କରିବେ । ଚକ୍ ପୋଛଣା ଲିଖନ ପ୍ରଭୃତି ପାଠାରମ୍ଭ ପୂର୍ବରୁ ଯଥା

ସ୍ଥାନରେ ଆଣି ରଖିଥିବେ । କଳାପଟ୍ଟାକୁ ପାଠଦାନ ପରେ ପରେ ପରିଷ୍କାର କରିବା ମଧ୍ୟ ତାଙ୍କର କାମ । ତାଙ୍କ କାର୍ଯ୍ୟ-କାଳ ମଧ୍ୟରେ ସ୍ଥଳୋପସ୍ଥାନ ଯେପରି ବିଶେଷ ସନ୍ତୋଷ ଜନକ ହୁଏ, ସେଥିପ୍ରତି ଦୃଷ୍ଟିଦେବା ମନ୍ତ୍ରୀଙ୍କର ପ୍ରଧାନ କର୍ତ୍ତବ୍ୟ ।

୮ । **ସଂସ୍କୃତି-ସେବକ**—ବିଦ୍ୟାଳୟ ଜୀବନରେ ସାଂସ୍କୃତିକ ଅବକାଶ ସାଧନ, ସଂସ୍କୃତି-ସେବକଙ୍କର ପ୍ରଧାନ ଦାୟିତ୍ୱ । ବିଦ୍ୟାଳର ଆରମ୍ଭ ଓ ଶେଷ ସମୟରେ ସମବେତ ପ୍ରାର୍ଥନା କରାଯିବ । ପ୍ରାର୍ଥନା ସମୟରେ ଶାନ୍ତିଶୃଙ୍ଖଳା ରକ୍ଷାକରିବା, ଏବଂ କିଏ ଭଜନ ଓ ଧୂନ୍ ଗାଇବେ, ତାହାର ବ୍ୟବସ୍ଥା କରିବା ସଂସ୍କୃତି-ସେବକଙ୍କର କାମ । ବିଦ୍ୟାଳୟ ଓ ପତାକା ପୀଠର ସାଜସଜ୍ଜା ପ୍ରତି ସେ ଦୃଷ୍ଟିଦେବେ । ସ୍ଥାନୀୟ, ସାଂସ୍କୃତିକ, ସାମାଜିକ ଓ ଜାତୀୟ ପର୍ବ-ପର୍ବାଣି ବିଦ୍ୟାଳୟରେ ଯେପରି ଯଥାଯଥ ଭାବରେ ପାଳିତ ହୁଏ, ତାହାର ସୁବ୍ୟ-ବସ୍ଥା କରିବା ମଧ୍ୟ ତାଙ୍କର ଦାୟିତ୍ୱ । ଏହା ବ୍ୟତୀତ ପ୍ରାଚୀର-ପତ୍ର ଓ ହସ୍ତଲିପି (Magazine) ଆଦିର ପ୍ରକାଶ ଦାୟିତ୍ୱ ସେ ବହନ କରିବେ । ସମୟ ସମୟରେ ସଂସ୍କୃତି-ବିଭାଗ ତରଫରୁ ପରିଭ୍ରମଣ ଓ ବନ-ଭୋଜନ ଆଦିର ଆୟୋଜନ ମଧ୍ୟ କରାଯିବ ।

୯ । **କ୍ରୀଡ଼ା ଓ ମନୋରଂଜନ—ସେବକ**—ବିଦ୍ୟାଳୟର ସାଧାରଣ ଜୀବନକୁ ସରସ ଓ ଜୀବନ୍ତ ରଖିବା ମନୋରଂଜନ ମନ୍ତ୍ରୀଙ୍କର ଦାୟିତ୍ୱ । ଏଥିପାଇଁ ବିଶେଷ ଦିବସମାନଙ୍କ ଉପଲକ୍ଷ୍ୟରେ ଉସ ମନୋରଂଜନର ବ୍ୟବସ୍ଥା କରାଇବେ । ପ୍ରତି ସପ୍ତାହ ବା ପକ୍ଷରେ ଥରେ ଲେଖାଁଏ ମନୋରଂଜନର ବ୍ୟବସ୍ଥା କରିବା ଉଚିତ । ହସକୌତୁକ

ନାଟକୁଦ, ସଂଗୀତ, ନୃତ୍ୟାଭିନୟ ଆଦର ଆୟୋଜନ କର, ଉଦନୁସାରେ ପୂର୍ବରୁ ପ୍ରସ୍ତୁତ ହେବାକୁ ପଡ଼ବ । କେଉଁ ଛାତ୍ର ମନୋରଂଜନରେ କ କ ଅଂଶ ଗ୍ରହଣ କରବେ, ତାହାର ବ୍ୟବସ୍ଥା କରବା ମନୋରଂଜନ-ମନ୍ତ୍ରୀଙ୍କର କାମ । ଏହା ବ୍ୟତତ ବର୍ଷକେ ଥରେ ବା ଦୁଇଥର ନାଟକାଭିନୟର ଆୟୋଜନ କରାଯିବା ଉଚତ ।

ମନୋରଂଜନ ମନ୍ତ୍ରୀ ଦୈନନ୍ଦନ ଖେଳ ଦାୟିତ୍ୱରେ ରହିବେ । ସମସ୍ତେ ଯେପର ଉତ୍ସାହ ସହକାରେ (games) ରେ ଭାଗ ନଅନ୍ତି, ସେଥିପ୍ରତ ସେ ଦୃଷ୍ଟିଦେବେ । ଛାତ୍ର-ମାନଙ୍କୁ ବଭିନ୍ନ ଦଳରେ ବଭକ୍ତ କର ଅନେକ ପ୍ରକାର କ୍ରୀଡ଼ା କୌତୁକର ବ୍ୟବସ୍ଥା କରବାକୁ ହେବ । ବଭିନ୍ନ ବାଦ୍ୟଯନ୍ତ୍ର ଓ କ୍ରୀଡ଼ୋପକରଣର ପୂର୍ଣ୍ଣ ଦାୟିତ୍ୱ ବହନ କରବା ମନୋରଂଜନ-ମନ୍ତ୍ରୀଙ୍କର ମୁଖ୍ୟ ଦାୟିତ୍ୱ ।

୧୦ । **ପୁସ୍ତକାଳୟ (ପଠନାଳୟ)-ସେବକ—** ବଦ୍ୟାଳୟରେ ଗୋଟିଏ ଗୋଟିଏ ଛାତ୍ର-ପୁସ୍ତକାଳୟର ବ୍ୟବସ୍ଥା ରହିବ । ଜଣେ ଲେଖାଁ ନର୍ବାଚତ ମନ୍ତ୍ରୀ ଏହାର ପୂର୍ଣ୍ଣ ଦାୟିତ୍ୱ ବହନ କରବେ । ଛାତ୍ରମାନଙ୍କୁ ବହି ଦେଇ ଟିପି ରଖିବା, ଠିକ୍ ସମୟରେ ଫେରସ୍ତ ନେବା ଓ ପୁସ୍ତକର ସଂଖ୍ୟା ଦେଖି ଯଥା ସ୍ଥାନରେ ସଜାଡ଼ି ରଖିବା ତାଙ୍କର କାମ । ଏହା ବ୍ୟତତ ପଠନାଳୟରେ ରହୁଥିବା ପତ୍ରପତ୍ରିକାଦର ପୂର୍ଣ୍ଣ ଦାୟିତ୍ୱ ବହନ କରବା ମଧ୍ୟ ତାଙ୍କ ଦାୟିତ୍ୱର ଅନ୍ତର୍ଗତ ।

୧୧ । **ଅତଥି-ସେବକ—**ବଦ୍ୟାଳୟକୁ କେହି ଅତଥି ଅଗନ୍ତୁକ ଆସିଲେ ତାଙ୍କର ସେବା ସତ୍କାରକରବା ଅତଥି ସେବକଙ୍କର ଦାୟିତ୍ୱ । ସେ ଅତଥିଙ୍କୁ ଆସନ ଦେବେ, ଗୋଡ଼

ଧୋଇବାକୁ ପାଣିଦେବେ ଓ ବିଦ୍ୟାଳୟ ବୁଲାଇ ଦେଖାଇବେ । କୌଣସି ଆଗନ୍ତୁକ କିଛି ଜାଣିବାକୁ ଇଚ୍ଛୁ ଥିଲେ ଆବଶ୍ୟକ ବ୍ୟବସ୍ଥା କରିଦେବା ମଧ୍ୟ ତାଙ୍କର କାମ । ଛାତ୍ରାବାସର ଜଣେ ସଭ୍ୟ ଅତିଥିସେବକ ହେଲେ, ଅତିଥିଙ୍କ ଖିଆପିଆ ବୁଝିବାରେ ସୁବିଧା ହୁଏ ।

୧୨ । **ସମବାୟ-ସେବକ**—ବିଦ୍ୟାଳୟରେ ଗୋଟିଏ ସମବାୟ-ଭଣ୍ଡାର ରହିବ । ବିଦ୍ୟାଳୟର ସମସ୍ତ ଛାତ୍ର ଏଥିରେ ଅଂଶୀଦାର ରହିବେ । ଛାତ୍ରମାନଙ୍କ ଉପଯୋଗୀ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟସବୁ ଏହି ଭଣ୍ଡାରରେ ଖରିଦହୋଇ ରଖାଯିବ । କୌଣସି ପଚିଲା ସଢ଼ିଲା ଜିନିଷ ଓ ମାଦକ ଦ୍ରବ୍ୟ ଏଥିରେ ସ୍ଥାନ ପାଇବା ଅନୁଚିତ । ସମବାୟ-ସେବକ ସ୍ୱତନ୍ତ୍ର ଭଣ୍ଡାରର ଜମାଖର୍ଚ୍ଚ ବିବରଣ ରଖିବେ । ମୋଟା ଦରରେ ଜିନିଷ କିଣାଯାଇ ସାମାନ୍ୟ ଲାଭରେ ଛାତ୍ରମାନଙ୍କୁ ତାହା ବିକ୍ରୀ କରାଯିବ । କେବଳ ଉତ୍କୃଷ୍ଟ ବ୍ୟବହାରୋପଯୋଗୀ ଦ୍ରବ୍ୟ ଯେପରି ସମବାୟ ଭଣ୍ଡାରରେ ସ୍ଥାନପାଏ—ସେଥିପ୍ରତି ବିଶେଷ ଦୃଷ୍ଟି ଦେବାକୁ ହେବ । ସମବାୟ ସେବକଙ୍କ ଜମାଖର୍ଚ୍ଚ ହିସାବ ମୁଖ୍ୟସେବକ ଓ ଗୁରୁଜୀମାନେ ଯାଞ୍ଚ୍ କରିପାରିବେ । କାର୍ଯ୍ୟକାଳ ପରେ ସେବକ ମହାଶୟ ଆୟ, ବ୍ୟୟ, ଲାଭ, ଗଚ୍ଛିତ ଦ୍ରବ୍ୟ ଓ ମୂଲ୍ୟ ଆଦିର ହିସାବ ଛାତ୍ରସଭା ଆଗରେ ଉପସ୍ଥାପିତ କରିବେ । କୌଣସି ଛାତ୍ର ବିଦ୍ୟାଳୟରୁ ବିଦାୟ ନେଇ ଗଲାବେଳେ, ତାଙ୍କର ମୂଳଧନ ଓ ଲାଭ ଫେରି ପାଇବେ । ସେହିପରି ନୂତନ ଛାତ୍ର ନାମ ଲେଖାଇଲେ ତାଙ୍କୁ ମଧ୍ୟ ବାଧ୍ୟ ହୋଇ ଗୋଟିଏ ଅଂଶ ଖରିଦ୍ କରିବାକୁ ହେବ । ବାର୍ଷିକ ଲଭ୍ୟାଂଶର

ଶତକଡ଼ା ପଚ୍ଚିଶ ଭାଗ ମୂଳଧନରେ ମିଶିଯିବ, ପଚିଶ ଭାଗ ଭଣ୍ଡାର-ପରିଚାଳନା ବାବଦରେ ଖର୍ଚ୍ଚ କରାଯିବ ଓ ଅବଶିଷ୍ଟ ପଚାଶ ଭାଗ ଗରିବ ଛାତ୍ରମାନଙ୍କୁ ସାହାଯ୍ୟ ଦିଆଯିବ । ଅବଶ୍ୟ ଲାଭାଂଶ କପରି ବ୍ୟୟିତ ହେବ, ତାହା ଛାତ୍ରସଭାରେ ସମୂହ ଭାବରେ ହିଁ ସ୍ଥିର କରାଯିବା ଉଚିତ ।

ବିଦ୍ୟାଳୟ ସହିତ ଛାତ୍ରାବାସ ଥିଲେ ନିମ୍ନ କେତେଜଣ ଅଧିକା ମନ୍ତ୍ରୀ ବା ସେବକ ନିର୍ବାଚିତ ହେବା ଉଚିତ । ଏହି ମନ୍ତ୍ରୀମାନେ ସ୍ୱତନ୍ତ୍ର ଭାବରେ କେବଳ ଛାତ୍ରାବାସର ପରିସର ମଧ୍ୟରେ ରହି କାର୍ଯ୍ୟ କରିପାରିବେ । ଛାତ୍ରାବାସରେ ରହୁଥିବା ଛାତ୍ରମାନେହିଁ ଏହି ପ୍ରକାର ନିର୍ବାଚନରେ ଭାଗ ନେଇପାରିବେ ଓ ସେମାନେ ଛାତ୍ରାବାସ ଗୁରୁଜୀଙ୍କ ଅଧୀନରେ ରହି କାମ କରିବେ ।

୧ । **ଛାତ୍ରାବାସ ବା ଗୃହସେବକ**—ସମଗ୍ର ବିଦ୍ୟାଳୟରେ ମୁଖ୍ୟମନ୍ତ୍ରୀଙ୍କର ଦାୟିତ୍ୱ ଯାହା, ଗୃହ-ସେବକଙ୍କର ଦାୟିତ୍ୱ ଛାତ୍ରାବାସ ମଧ୍ୟରେ ପ୍ରାୟ ତଦନୁରୂପ । ଛାତ୍ରାବାସର ସଫାଇ, ସାଜସଜ୍ଜା, ଶାନ୍ତି ଶୃଙ୍ଖଳା, ସ୍ୱାସ୍ଥ୍ୟ ଓ ଛାତ୍ର-ଛାତ୍ର ମଧ୍ୟରେ ସଦ୍ଭାବ-ପ୍ରତିଷ୍ଠା ତାଙ୍କର ମୁଖ୍ୟ ଦାୟିତ୍ୱ । କୌଣସି ଛାତ୍ର ଅସମୟରେ ବାହାରକୁ ଗଲେ ଗୃହ-ସେବକଙ୍କର ଅନୁମତି ନେବାକୁ ହେବ । ସେଥି ଉଦ୍ଦେଶ୍ୟରେ ସେ ଏକ ବିବରଣୀ ମଧ୍ୟ ନିଜ ପାଖରେ ରଖିବେ । କୌଣସି ଛାତ୍ର ପ୍ରଧାନ ଗୁରୁଜୀଙ୍କଠାରୁ ଛୁଟି ନେଇ ଯିବା ପୂର୍ବରୁ ଗୃହ ସେବକଙ୍କୁ ତାହା ଜଣାଇଦେଇ ଯିବେ । ଛାତ୍ରାବାସର ସୁରକ୍ଷା ଓ ସମ୍ମାନ ରକ୍ଷା ପ୍ରତି ସେବକ ମହାଶୟ ବିଶେଷ ସତର୍କ ରହିବେ । ଛାତ୍ରାବାସ ଭିତରେ ଯେପରି କୌଣସି ମାଦକ ଦ୍ରବ୍ୟର ବ୍ୟବହାର

ନ ହୁଏ, ସେଥିପ୍ରତି ସେ କଡ଼ା ଦୃଷ୍ଟି ଦେବେ । ଛାତ୍ରାବାସର ସଭ୍ୟମାନେ ପ୍ରତ୍ୟହ ସକାଳେ ଅଧଘଣ୍ଟା ବ୍ୟାୟାମ କରିବେ । ସେମାନେ ସମ୍ପୃକ୍ତ ଗୁରୁଜୀଙ୍କ ବିନାନୁମତିରେ ନିଜ ନିଜର ସ୍ଥାନ ବଦଳାଇ ପାରିବେ ନାହିଁ । ଅନ୍ୟମଧ୍ୟ ଛାତ୍ରବାସ ଦାୟିତ୍ୱରେ ଥିବା ଗୁରୁଜୀଙ୍କ ବିନାନୁମତିରେ କୌଣସି ଛାତ୍ର, ଛାତ୍ରାବାସରେ ତାଙ୍କର ଅତିଥିଙ୍କୁ ସ୍ଥାନ ଦେଇ ପାରିବେ ନାହିଁ, କି ସ୍କୁଲ ସମୟରେ ଛାତ୍ରାବାସରେ ରହି ପାରିବେ ନାହିଁ । ସନ୍ଧ୍ୟା ସମୟରେ ଛାତ୍ରାବାସର ସମୂହ ପ୍ରାର୍ଥନା କରାଯିବ ଓ ଉପସ୍ଥାନ ନିଆଯିବ ।

୨ । ଖାଦ୍ୟ—ସେବକ—ଖାଦ୍ୟ-ସେବକ ରୋଷାଇ ଘରର ପୂର୍ଣ୍ଣ ଦାୟିତ୍ୱ ବହନ କରିବେ । କେଉଁଦିନ ଖାଦ୍ୟର ପ୍ରକାର କିପରି ହେବ, ତାହା ସେ ସ୍ଥିରକରି ନିର୍ଦ୍ଦେଶ-ପଟ୍ଟାରେ ତାହା ଉଲ୍ଲେଖ କରିବେ । ଦୈନନ୍ଦିନ ଖାଦ୍ୟଦ୍ରବ୍ୟର ପ୍ରସ୍ତୁତ କରଣପାଇଁ କ କ ଜିନିଷ ଆବଶ୍ୟକ, ତାହା ଯୋଗାଣ-ସେବକଙ୍କ ନିକଟରେ ସେ ଯୋଗାଇ ରଖିବେ । ପରିବାରକୁ ସୁଷମ ଓ ସୁସ୍ୱାଦ ଖାଦ୍ୟ ଯଥା ସମ୍ଭବ ଅଳ୍ପ ଖର୍ଚ୍ଚରେ ଯୋଗାଇବା, ତାଙ୍କର ପ୍ରଧାନ ଲକ୍ଷ୍ୟ ହେବ ଉଚିତ । ଦାୟିତ୍ୱ ବହନ କରିବା ପୂର୍ବରୁ ସେ ଛାତ୍ରାବାସର ସଭ୍ୟମାନଙ୍କ ମିଳିତ ବୈଠକରେ ଏକ ସୁଚିନ୍ତିତ ଖାଦ୍ୟଯୋଜନା ଅଗତ କରିବେ । ଅନ୍ୟାନ୍ୟ ସଭ୍ୟମାନେ ସେମାନଙ୍କ ମତାମତ ଓ ପ୍ରସ୍ତାବ ଦେବେ । ଯୋଜନାଟି ଗୃହୀତ ହୋଇ ସାରିବା ପରେ ତାହାକୁ କାର୍ଯ୍ୟକାରୀ କରିବା ପାଇଁ ସେ ପ୍ରାଣପଣେ ଲାଗିପଡ଼ିବା ଉଚିତ । ଖାଦ୍ୟ-ସେବକ ଦାୟିତ୍ୱ ଗୁରୁ ହୋଇଥିବାରୁ ତାଙ୍କୁ ସାହାଯ୍ୟ କରିବାପାଇଁ ଜଣେ ସହକାରୀ ମନୋନୀତ ହୋଇ ପାରନ୍ତି ।

ଖାଦ୍ୟ-ସେବକଙ୍କ ନିକଟରେ ଗୋଟିଏ "ଅଭିଯୋଗ-ପୁସ୍ତକ" ରହିବ; ସଭ୍ୟମାନେ ଖାଦ୍ୟ-ସମ୍ପର୍କୀୟ ଅଭିଯୋଗ ସେଥିରେ ଉଲ୍ଲେଖ କରି ପାରିବେ । କାର୍ଯ୍ୟକାଳ ପରେ ସେ ତାଙ୍କ ଖାଦ୍ୟ-ବିବରଣୀ ଛାତ୍ର-ସଭା ଆଗରେ ଆଗତ କରିବେ ଏବଂ ଆଲୋଚନା ପରେ ତାହା ଗୃହୀତ ହେବ ।

୩ । ଯୋଗାଣ-ସେବକ—ଖାଦ୍ୟ-ସେବକଙ୍କ ନିର୍ଦ୍ଦେଶ ଅନୁସାରେ ସବୁ ଜିନିଷ ପୂର୍ବରୁ ଆଣି ଭଣ୍ଡାର-ଘରେ ସଜାଇ ରଖିବା ଯୋଗାଣ-ସେବକଙ୍କର ମୁଖ୍ୟ କାମ । ପ୍ରତେକ ଦିନ ଖାଦ୍ୟ-ସେବକଙ୍କୁ ସେ ଯେଉଁ ଯେଉଁ ଜିନିଷ ଯୋଗାଇବେ, ତାହାର ପରିମାଣ ଓ ମୂଲ୍ୟର ବିବରଣ ସେ ଲେଖି ରଖିବେ ।

୪ । ଅର୍ଥ-ସେବକ—ଖାଦ୍ୟ-ସେବକଙ୍କଠାରୁ ଚିଠା ରଖି ଟଙ୍କାଦେବା ଓ ଖରିଦ୍ ହୋଇଥିବା ଜିନିଷର ହିସାବ ରଖିବା ଅର୍ଥ-ମନ୍ତ୍ରୀଙ୍କର କାର୍ଯ୍ୟ । ପ୍ରାଞ୍ଜଳ ଭାବରେ ଖାଦ୍ୟ ସମ୍ପର୍କୀୟ ସମସ୍ତ ଜମା-ଖର୍ଚ୍ଚ ହିସାବ ରଖିବାକୁ ହେବ । ପ୍ରତ୍ୟେକ ମାସ ପରେ ସେ ମୋଟ ଆୟବ୍ୟୟର ହିସାବ କରି ଗୃହସେବକ ଓ ଖାଦ୍ୟ-ସେବକଙ୍କ ଦ୍ୱାରା ଯାଞ୍ଚ କରାଇ ନେବେ । ତାଙ୍କ ନିକଟରେ ଛାତ୍ରମାନଙ୍କ ଖାଦ୍ୟ ସମ୍ପର୍କୀୟ ଦେୟ୍ ଗଚ୍ଛିତ ରହିବ । ଖରିଦ୍ ହେଉଥିବା ଜିନିଷର ହିସାବ ଉଭୟ ଯୋଗାଣ ଓ ଅର୍ଥ ମନ୍ତ୍ରୀଙ୍କ ନିକଟରେ ରଖାଯାଉଥିବାରୁ ବିଶେଷ ଗଣ୍ଡଗୋଳ ହେବାର ଆଶଙ୍କା ନାହିଁ ।

୫ । ଆଲୋକ-ସେବକ—କିରୋସିନ୍ କିଣି ଆଣି ସନ୍ଧ୍ୟା ପୂର୍ବରୁ ସମସ୍ତ ସଭ୍ୟଙ୍କୁ ତାହା ଯୋଗାଇ ଦେବା ଆଲୋକ-ସେବକଙ୍କର କାର୍ଯ୍ୟ । ଉତ୍ସବ-ଦିନରେ ପେଟ୍ରୋମାକ୍ସ

ଆଲୁଅର ମଧ୍ୟ ସେ ବ୍ୟବସ୍ଥା କରିବା ଉଚିତ । ଗ୍ରାମବାସର ଜଣେ ସଭ୍ୟ ସମବାୟ-ସେବକ ନିର୍ବାଚିତ ହେଲେ, ସ୍ୱତନ୍ତ୍ର ଅନେକ ସେବକଙ୍କର ଆଉ ଆବଶ୍ୟକତା ରହିବ ନାହିଁ । ସେ ଉଭୟ ଦାୟିତ୍ୱ ତୁଲାଇ ପାରିବେ ।



# ବିଚାର-ବ୍ୟବସ୍ଥା

ଭାରତରେ ଇଂରେଜ-ରାଜତ୍ୱ ଅମଳରୁ ବିଦ୍ୟାଳୟମାନଙ୍କରେ, ଏକ ରକମର ଏକତନ୍ତ୍ର ଶାସନ-ବ୍ୟବସ୍ଥା ପ୍ରଚଳନ କରାଯାଇ ଆସିଅଛି । ଏହି ବ୍ୟବସ୍ଥା ଅନୁସାରେ ସମସ୍ତ ଶାସନ ଓ ବିଚାର କ୍ଷମତା ବିଦ୍ୟାଳୟର ପ୍ରଧାନ ଶିକ୍ଷକଙ୍କ ହାତ ମୁଠାରେ କେନ୍ଦ୍ରୀଭୂତ ହୋଇ ରହିଅଛି । ତେଣୁ ବିଦ୍ୟାଳୟର ସାଧାରଣ ପରିଚାଳନା-କ୍ଷେତ୍ରରେ ଛାତ୍ରମାନଙ୍କର କୌଣସି ଦାୟିତ୍ୱ ସ୍ୱୀକୃତ ହୋଇନାହିଁ । ଛାତ୍ରୀମାନଙ୍କର ସମସ୍ତ ସ୍ୱାଧୀନ ପ୍ରବୃତ୍ତିକୁ ଚପିଚୁପି ଦେଇ ଅନ୍ୟର ନିର୍ଦ୍ଦେଶ ଅନୁସାରେ ବିନା ଦ୍ୱିଧାରେ ସେମାନଙ୍କୁ ଚଳିବାକୁ ଶିଖାଇବା ହିଁ ଏପରି ଶିକ୍ଷାନୀତି ପ୍ରୟୋଗ କରିବାର ମୁଖ୍ୟ ଉଦ୍ଦେଶ୍ୟ । ଭାରତ ବର୍ଷରେ ଇଂରେଜମାନେ ଯେପରି ବିନା ବାଧା ବିଘ୍ନରେ ନିରଙ୍କୁଶ ଶାସନ ପ୍ରତିଷ୍ଠା କରିପାରିବେ, ସେହି ଦୃଷ୍ଟିରୁ ପ୍ରଧାନ ଶିକ୍ଷକମାନେ ଏକ ରକମ ରାଜ ପ୍ରତିନିଧି ରୂପେ ହିଁ ବିଦ୍ୟାଳୟର ପରିଚାଳନା କରି ଆସୁଛନ୍ତି । ବିଦ୍ୟାଳୟ-ଜୀବନରୁ ଛାତ୍ରମାନେ କିପରି ଶାସକଙ୍କର ନୀତିନିର୍ଦ୍ଦେଶ ନତମସ୍ତକ ହୋଇ ମାନି ନେବାକୁ ଶିଖିବେ ଓ ଫଳରେ ଏକଚ୍ଛତ୍ର ଶାସନ-ବ୍ୟବସ୍ଥା ଦେଶରେ ସହଜରେ ପ୍ରତିଷ୍ଠିତ ହୋଇପାରିବ—ସେହି ଉଦ୍ଦେଶ୍ୟରେ ହିଁ

ବିଦ୍ୟାଳୟର ସମସ୍ତ ଦାୟିତ୍ୱ ପ୍ରଧାନ ଶିକ୍ଷକଙ୍କଠାରେ ନ୍ୟସ୍ତ କରି ଯାଇଅଛି ।

ସୌଭାଗ୍ୟବଶତଃ ବର୍ତ୍ତମାନ ପରିସ୍ଥିତି ବଦଳି ଯାଇଛି । ଭାରତରେ ଇଂରେଜ ଶାସନର ଅବସାନ ଘଟିଛି । ଆଜି ଭାରତ ଏକ ସ୍ୱାଧୀନ ସାର୍ବଭୌମ ରାଷ୍ଟ୍ର । ଏ ଦେଶରୁ ଶାସନ-କ୍ଷେତ୍ରରେ ରାଜତନ୍ତ୍ର ବା ଏକତନ୍ତ୍ର ବଦଳରେ ଗଣତନ୍ତ୍ର ପ୍ରତିଷ୍ଠିତ ହୋଇଅଛି । କିନ୍ତୁ ଦୁଃଖର କଥା ଯେ, ଦଶ ବର୍ଷ ଧରି ଭାରତ ସ୍ୱାଧୀନ ହୋଇଥିଲେ ମଧ୍ୟ ଆମ ବିଦ୍ୟାଳୟମାନଙ୍କରେ ସ୍ୱାୟତ୍ତ ଶାସନ ବ୍ୟବସ୍ଥା ଏପର୍ଯ୍ୟନ୍ତ ଆନ୍ତରିକତା ସହକାରେ ପ୍ରୟୋଗ କରାଯାଇନାହିଁ ।

ଆମେରିକା ଯୁକ୍ତରାଷ୍ଟ୍ରର ପୂର୍ବତନ ସ୍ୱନାମଧନ୍ୟ ସଭାପତି ଶ୍ରୀ ଅବ୍ରାହମ୍ ଲିନ୍‌କନଙ୍କ ଭାଷାରେ କହିଲେ—"ଲୋକଙ୍କର, ଲୋକଙ୍କଦ୍ୱାରା ଓ ଲୋକଙ୍କ ସକାଶେ ଶାସନ ହିଁ ଗଣତନ୍ତ୍ର ଶାସନ ।" ତେଣୁ ଲୋକ ସାଧାରଣଙ୍କ ମଧ୍ୟରୁ ନିର୍ବାଚନ-ପ୍ରଣାଳୀରେ ଓ ଲୋକଙ୍କ କଲ୍ୟାଣ ସାଧନ ଉଦ୍ଦେଶ୍ୟରେ, ଯେଉଁ ଶାସନ ବ୍ୟବସ୍ଥା ପ୍ରଚଳିତ ହୁଏ—ତାହାକୁହିଁ ଗଣତନ୍ତ୍ର କୁହାଯାଏ । ଗଣତନ୍ତ୍ର-ଭାରତର ଶାସନ ବ୍ୟବସ୍ଥା ପାଇଁ ଦୃଢ ଭିତ୍ତି ସ୍ଥାପନ କରିବାକୁ ହେଲେ ପ୍ରତ୍ୟେକ ବିଦ୍ୟାଳୟରେ ଏପରି ବ୍ୟବସ୍ଥା ପ୍ରଚଳନ କରିବାକୁ ହେବ । ଦେଶରେ ଗଣତନ୍ତ୍ର ମନୋଭାବାପନ୍ନ ଏକ ଆଦର୍ଶ ନେତୃତ୍ୱ ତିଆରି କରିବାକୁ ହେଲେ ଏହା ବ୍ୟତୀତ ଭିନ୍ନ ପନ୍ଥା ଆଉ ନାହିଁ ।

ଗଣତନ୍ତ୍ର-ଶାସନ ତିନି ଭାଗରେ ବିଭକ୍ତ, ଯଥା—(୧)ବିଧାନ ବିଭାଗ, (୨) ଶାସନ-ବିଭାଗ, (୩) ବିଚାର-ବିଭାଗ । ଏହି ତିନି ବିଭାଗର କାର୍ଯ୍ୟ ଠିକ୍ ଠିକ୍ ଭାବରେ ପରିଚାଳିତ ହେଲେହିଁ ଦେଶରେ ଶାନ୍ତି ଶୃଙ୍ଖଳା ପ୍ରତିଷ୍ଠା କରିବାକୁ ଗଣତନ୍ତ୍ର ସମର୍ଥ ହୁଏ ।

ତେଣୁ ବିଦ୍ୟାଳୟର ପରିଚାଳନା-କ୍ଷେତ୍ରରେ ଗଣତନ୍ତ୍ରର ସଫଳ ପ୍ରୟୋଗ କରିବାକୁ ହେଲେ ପୂର୍ବୋକ୍ତ ତିନୋଟି ବିଭାଗ ଦ୍ୱାରା ହିଁ ବିଦ୍ୟାଳୟ ସୁପରିଚାଳିତ ହେବା ଅବଶ୍ୟକ ।

ପୂର୍ବ ଅଧ୍ୟାୟରେ ଗଣତନ୍ତ୍ରର ବିଧାନ-ବିଭାଗ ଏବଂ ଶାସନ ବିଭାଗର କର୍ତ୍ତବ୍ୟ ଓ ଦାୟିତ୍ୱ ସମ୍ପର୍କରେ ଉଲ୍ଲେଖ କରାଯାଇଛି । ବିଦ୍ୟାଳୟରେ "ଛାତ୍ରସଭା" ବିଧାନ-ବିଭାଗ ଓ ମନ୍ତ୍ରୀମଣ୍ଡଳ ଶାସନ-ବିଭାଗର ଦାୟିତ୍ୱ ତୁଲାଇବେ । ବର୍ତ୍ତମାନ ଆମେ ଗଣତନ୍ତ୍ରର ବିଚାର ବିଭାଗ କୁ କିପରି ବିଦ୍ୟାଳୟର ପରିଚାଳନା-କ୍ଷେତ୍ରରେ ସଫଳତା ସହକାରେ ପ୍ରୟୋଗ କରାଯାଇପାରିବ—ସେ ବିଷୟରେ ଆଲୋକପାତ କରାଯିବ ।

ବିଚାର—ବିଭାଗ—ପ୍ରଧାନ ଗୁରୁଜୀ ବିଦ୍ୟାଳୟ ରୂପକ-ରାଷ୍ଟ୍ରର ସଭାପତି ଦାୟିତ୍ୱ (President) ତୁଲାଇବେ । ପ୍ରଧାନ ଗୁରୁଜୀଙ୍କ ଦ୍ୱାରା ମନୋନୀତ ଏକ 'ଛାତ୍ର-ପଞ୍ଚାୟତ' ବର୍ଷକ ସକାଶେ ବିଦ୍ୟାଳୟର ବିଚାର-ଦାୟିତ୍ୱ ବହନ କରିବେ । ବିଚାରପତିମାନଙ୍କ ମଧ୍ୟରେ କେହି ଗୁରୁତର ଅଭିଯୋଗରେ ଦୋଷୀ ସାବ୍ୟସ୍ତ ହେଲେ ଗୁରୁଜୀ ତାଙ୍କର ସଭ୍ୟପଦ କାଟି ଦେବେ ଓ ତାଙ୍କ ସ୍ଥାନରେ ଅନ୍ୟ ଛାତ୍ରକୁ ବିଚାରପତି ନିଯୁକ୍ତ କରିବେ । ଯେତେଦୂର ସମ୍ଭବ ବିଦ୍ୟାଳୟର ନିରପେକ୍ଷ ଓ ନ୍ୟାୟପରାୟଣ ଛାତ୍ରଙ୍କୁ ନେଇ ଛାତ୍ର-ପଞ୍ଚାୟତ ଗଠନ କରାଯିବ ।

ଛାତ୍ର-ପଞ୍ଚାୟତର ସଭ୍ୟସଂଖ୍ୟା ବିଯୋଡ଼ ହେବା ଉଚିତ; ଏହା ଯୋଡ଼ ସଂଖ୍ୟା ହୋଇଥିଲେ ପ୍ରଧାନ ବିଚାରପତିଙ୍କ ସ୍ୱତନ୍ତ୍ର ଭୋଟ୍ କ୍ଷମତା ସ୍ୱୀକୃତ ହେବ । କୌଣସି ଅଭିଯୋଗର ନିଷ୍ପତ୍ତି ଛାତ୍ର-ପଞ୍ଚାୟତରେ ବହୁ ମତରେ ସ୍ଥିର କରାଯିବ । ଯଦି କୌଣସି ନିଷ୍ପତ୍ତିର ସପକ୍ଷ ଓ ବିପକ୍ଷରେ ସମାନ ମତ ହୁଏ, ତା'ହେଲେ କେବଳ ସେହି

କ୍ଷେତ୍ରରେ ପ୍ରଧାନ ବିଚାରପତି ତାଙ୍କର ସ୍ୱତନ୍ତ୍ର ଭୋଟ୍ କ୍ଷମତା ( Casting vote ) ପ୍ରୟୋଗ କରି ତାହାର ନିଷ୍ପତ୍ତି କରିପାରିବେ ।

ପ୍ରଧାନ ଗୁରୁଜୀ ଛାତ୍ର-ପଞ୍ଚାୟତର ପ୍ରଧାନ ବିଚାରପତିଙ୍କୁ ମନୋନୀତ କରିବେ; କିନ୍ତୁ ତାଙ୍କର ସମ୍ମତିକ୍ରମେ ଅନ୍ୟ ବିଚାରପତିମାନେ ମଧ୍ୟ ପ୍ରଧାନ ବିଚାରପତିଙ୍କୁ ନିର୍ବାଚିତ କରିପାରନ୍ତି । ଛାତ୍ର-ପଞ୍ଚାୟତର ନିଷ୍ପତ୍ତି ବିରୋଧରେ କୌଣସି ଛାତ୍ର ଇଚ୍ଛା କଲେ, ପ୍ରଧାନ ଗୁରୁଜୀଙ୍କଠାରେ ଅବଶ୍ୟ ପୁନର୍ବିଚାର ପାଇଁ ନିବେଦନ (Appeal) କରିପାରେ । ବିଶେଷ କାରଣ ନ ଥିଲେ ଛାତ୍ର-ପଞ୍ଚାୟତ କାର୍ଯ୍ୟରେ ପ୍ରଧାନ ଗୁରୁଜୀ ମହାଶୟ ଅଯଥା ହସ୍ତକ୍ଷେପ କରିବେ ନାହିଁ । ଛାତ୍ର-ପଞ୍ଚାୟତର ନିଷ୍ପତ୍ତି ଓ ଅଭିଯୋଗ ସମ୍ପର୍କରେ ପ୍ରଧାନ ଗୁରୁଜୀ ନିଜେ ଅନୁସନ୍ଧାନ କରିପାରନ୍ତି ବା ଅନ୍ୟ ଜଣେ ନିରପେକ୍ଷ ଶିକ୍ଷକଙ୍କୁ ସେହି ଦାୟିତ୍ୱ ଦେଇପାରନ୍ତି ।

ପ୍ରଧାନ ବିଚାରପତି ଛାତ୍ର-ପଞ୍ଚାୟତର ଆବାହକ ଦାୟିତ୍ୱ ତୁଲାଇବେ । ତାଙ୍କ ନିକଟରେ ଗୋଟିଏ "ଅଭିଯୋଗ-ବିବରଣୀ" ରହିବ । ସେଥିରେ (୧) ତାରିଖ (୨) ଅଭିଯୋଗୀର ନାମ (୩) ସାକ୍ଷୀ ପ୍ରମାଣ (୪) ଅଭିଯୁକ୍ତର ନାମ (୫) ଅଭିଯୋଗର କାରଣ (୬) ନିଷ୍ପତ୍ତି (୭) ପ୍ରଧାନ ବିଚାରପତିଙ୍କ ସ୍ୱାକ୍ଷର ଆଦି ସ୍ତମ୍ଭ ରହିବ । ଅଭିଯୋଗୀମାନେ ସେମାନଙ୍କ ଦରଖାସ୍ତ ପ୍ରଧାନ ଗୁରୁଜୀଙ୍କୁ ଦେବେ । ଯେଉଁ ସବୁ ଅଭିଯୋଗର ବିଚାର ଆବଶ୍ୟକ ବୋଲି ଗୁରୁଜୀ ଅନୁଭବ କରିବେ, କେବଳ ସେସବୁର ବିବରଣୀ ପ୍ରଧାନ ବିଚାରପତିଙ୍କ ନିକଟକୁ ସେ ପଠାଇ ଦେବେ ।

ନିର୍ଦ୍ଦିଷ୍ଟ ସଂଖ୍ୟକ ଅଭିଯୋଗ ହସ୍ତଗତ ହେବା ପରେ ପ୍ରଧାନ ବିଚାରପତି ଏକ ସମୟ ସ୍ଥିର କରିବେ ଓ ତାହା ଅନ୍ୟ ବିଚାରପତି, ଅଭିଯୋଗୀ ଓ ଅଭିଯୁକ୍ତମାନଙ୍କୁ ଜଣାଇ ଦେବେ ।

ବିଦ୍ୟାଳୟର ସାଧାରଣ କାର୍ଯ୍ୟ ଚାଲିଥିବା ସମୟରେ ଛାତ୍ର ପଞ୍ଚାୟତର ବୈଠକ ଡକାଯିବା ଠିକ୍ ହେବ ନାହିଁ । ଏଥିପାଇଁ କୌଣସି ଛୁଟି ଦିବସ ବାଛିଗଲେ ଭଲ । ଅଭିଯୋଗୀମାନେ ସେମାନଙ୍କ ସାକ୍ଷ୍ୟ ପ୍ରମାଣ ସାଙ୍ଗରେ ଧରି ନିର୍ଦ୍ଦିଷ୍ଟ ସମୟରେ ଛାତ୍ର-ପଞ୍ଚାୟତ ବୈଠକରେ ଉପସ୍ଥିତ ହେବେ । କୌଣସି ସାକ୍ଷୀ ମିଥ୍ୟା ସାକ୍ଷ୍ୟ ଦେବାର ପ୍ରମାଣ ମିଳିଲେ, ତାହା ବିପକ୍ଷରେ ଗୁରୁତର କାର୍ଯ୍ୟାନୁଷ୍ଠାନ କରାଯିବା ଉଚିତ । ଏପରି ସାକ୍ଷୀଙ୍କଠାରୁ ଭବିଷ୍ୟତରେ ଆଉ ସାକ୍ଷ୍ୟପ୍ରମାଣ ନିଆଯିବ ନାହିଁ ବୋଲି ପଞ୍ଚାୟତରେ ପ୍ରସ୍ତାବ ଧାର୍ଯ୍ୟ କରାଯାଇ ପ୍ରଧାନ ଗୁରୁଜୀଙ୍କୁ ତାହା ଜଣାଇ ଦିଆ ଯାଇପାରେ ।

ଅଭିଯୋଗଗୁଡ଼ିକର ନିଷ୍ପତ୍ତି ପ୍ରଧାନ ବିଚାରପତି ଶିଶୁ-ପଞ୍ଚାୟତ ତରଫରୁ ପ୍ରଧାନ ଗୁରୁଜୀଙ୍କୁ ଜଣାଇଦେବେ ଓ ସେ ତାହା କାର୍ଯ୍ୟକାରୀ କରିବେ । ଦେଶରେ ଏକ ନିରପେକ୍ଷ ଓ ନ୍ୟାୟ-ପରାୟଣ ବିଚାରର ପରମ୍ପରା ସୃଷ୍ଟି କରିବା ଏବଂ ଗାଁରେ ପଞ୍ଚାୟତ ଶାସନକୁ ଫଳପ୍ରଦ କରାଇବା ଉଦ୍ଦେଶ୍ୟରେ ହିଁ ବିଦ୍ୟାଳୟରେ ଆତ୍ମ-ବିଚାର-ବ୍ୟବସ୍ଥା ପ୍ରୟୋଗ କରାଯାଉଅଛି । ଏହାଦ୍ୱାରା ଛାତ୍ର-ମାନେ ସୁବିଚାର କରିବା କ୍ଷମତା ହାସଲ କରିବା ସଙ୍ଗେ ସଙ୍ଗେ ଉଲମନ୍ଦ ଓ ନ୍ୟାୟାନ୍ୟାୟ ତଉଲିବା ଶକ୍ତି ମଧ୍ୟ ଲାଭ କରିପାରିବେ ।

ଆଜିକାଲି ଉଚ୍ଚ ବିଦ୍ୟାଳୟ ଓ ମହା ବିଦ୍ୟାଳୟମାନଙ୍କରେ ବାଦ ବିସମ୍ବାଦ ଓ ଅଶାନ୍ତି ବିଶୃଙ୍ଖଳା ଅଧିକ ବିଶେଷ ପରିମାଣରେ ଦେଖାଯାଉଛି । ବିଦ୍ୟାଳୟମାନଙ୍କରେ ସ୍ୱାୟତ୍ତ ଶାସନ ବ୍ୟବସ୍ଥାର ପ୍ରଚଳନ ନ ଥିବାରୁ ହିଁ ଏସବୁ ବିଭ୍ରାଟ ମୁଖ୍ୟତଃ ଦେଖା ଦେଉଅଛି । ଜୋର ଜବରଦସ୍ତି ଉପରୁ ଲଦି ଦିଆ ଯାଉଥିବା ନିୟମ ଶୃଙ୍ଖଳାକୁ ଅବମାନନା କରିବା ପାଇଁ, ଛାତ୍ର ସାଧାରଣତଃ ଏକ ଆଭ୍ୟନ୍ତରୀଣ ପ୍ରେରଣା ଲାଭ କରେ । ଅନ୍ୟ ପକ୍ଷରେ କୌଣସି ଛାତ୍ର ବା ବ୍ୟକ୍ତି

ଯଦି ଶୃଙ୍ଖଳାକୁ ସୁଚିନ୍ତିତ ଭାବରେ ନିଜ ଉପରେ ପ୍ରୟୋଗ କରିଥାଏ, ତାʼହେଲେ ତାହାକୁ କାର୍ଯ୍ୟକାରୀ କରିବା ପାଇଁ ସେ ନୈତିକ ପ୍ରେରଣା ପାଏ । ତେଣୁ ସୁଚିନ୍ତିତ ଓ ବିବେକାନୁମୋଦିତ ନିୟମ ଶୃଙ୍ଖଳାକୁ ନିଜେ କାର୍ଯ୍ୟକାରୀ କରିବାରେ କୌଣସି ବିରୋଧ ଦେଖା ଦିଏନାହିଁ । ଆଜିକାଲିର ସ୍ୱାଧୀନ ଓ ଗଣତାନ୍ତ୍ରିକ ଯୁଗରେ ଧର୍ମଘଟ, ବାଦ ବିସମ୍ବାଦ ଓ ବିଶୃଙ୍ଖଳାକୁ ଶିକ୍ଷା କ୍ଷେତ୍ରରୁ ଦୂର କରିବାକୁ ହେଲେ ଆତ୍ମଶୃଙ୍ଖଳାକୁ ବେଶୀ ସ୍ଥାନ ଦେବାକୁହିଁ ହେବ । ବିଦ୍ୟାଳୟରେ ଦାୟିତ୍ୱ ବୋଧର ଏପରି ଏକ ଅନୁକୂଳ ବାତାବରଣ ସୃଷ୍ଟି କରିବାକୁ ହେବ, ଯଦ୍ୱାରା ଛାତ୍ର ଆତ୍ମ ଶୃଙ୍ଖଳାର ଅଧୀନ ହୋଇ ଆପେ ଆପେ କର୍ତ୍ତବ୍ୟ ପଥରେ ଅଗ୍ରେଇଯିବ ।

ଶିଶୁ ସ୍ୱଭାବତଃ ସ୍ୱାଧୀନଚେତା ଓ ଆତ୍ମ-ଶୃଙ୍ଖଳାର ଅଧୀନ । ଉଦାହରଣ ସ୍ୱରୂପ କେତେକ ଖେଳରେ ହାରିଗଲେ ଶିଶୁମାନେ ଗୁହମଡ଼ା ହେବାର ନିୟମକୁ ଖେଳିବା ପୂର୍ବରୁ ମାନି ନେଇଥାନ୍ତି । ତେଣୁ ଖେଳପରେ ହାରିଯାଇଥିବା ଶିଶୁ ଗୁହମଡ଼ା ହେବାକୁ କୁଣ୍ଠା ବୋଧ କରେ ନାହିଁ । ସେ ହସି ହସି ନିଜପ୍ରତି ଆସୁଥିବା ଦଣ୍ଡକୁ ଗ୍ରହଣ କରେ । କିନ୍ତୁ ଅନ୍ୟ ପକ୍ଷରେ ବିନା କାରଣରେ ତାକୁ ଗୁହ ମଡ଼ା ବା ଅପମାନିତ କରାଯାଇଥିଲେ, ସେ ତାହାର ତୀବ୍ର ବିରୋଧ କରିଥାଆନ୍ତି । ଏହି ଦୃଷ୍ଟାନ୍ତରୁ ପ୍ରମାଣ ମିଳେ ଯେ ଶିଶୁ ସ୍ୱଭାବତଃ ଯୁକ୍ତିବାଦୀ ଓ ଆତ୍ମ-ଶୃଙ୍ଖଳାର ସମର୍ଥକ । ତେଣୁ ଆତ୍ମ-ଶୃଙ୍ଖଳା ଓ ଆତ୍ମ-ଶାସନ-ବ୍ୟବସ୍ଥାର ସଫଳ ପ୍ରୟୋଗ କରାଗଲେ ବିଦ୍ୟାଳୟରେ ସାଧାରଣ ଜୀବନ ଅଧିକ ଶାନ୍ତ, ସଂଯତ ଓ ସୁଖମୟ ହୋଇ ଉଠିବ—ଏଥିରେ ସନ୍ଦେହ ନାହିଁ ।



# ଦଣ୍ଡ ବିଧାନ ବ୍ୟବସ୍ଥା

ଯେତେଦୂର ସମ୍ଭବ 'ଛାତ୍ର-ପଞ୍ଚାୟତ'ର ସୁପାରିଶ ଅନୁସାରେହିଁ ଦୋଷୀ ଛାତ୍ର ମାନଙ୍କୁ ଦଣ୍ଡବିଧାନ କରାଯିବ । କେବଳ ବିଦ୍ୟାଳୟର ପ୍ରଧାନ ଗୁରୁଜୀ ଛାତ୍ରମାନଙ୍କୁ ଶାରୀରିକ ଦଣ୍ଡ ଦେଇ ପାରିବେ । ଅନ୍ୟ ସହକାରୀ ଗୁରୁଜୀମାନେ କୌଣସି ଛାତ୍ରକୁ ଶାରୀରିକ ଦଣ୍ଡ ଦେବା ଉଚିତ ହେବନାହିଁ ।

ସାଧାରଣତଃ ଦୁଇଟି ଉଦ୍ଦେଶ୍ୟରେ ଦୋଷୀକୁ ଦଣ୍ଡ ଦିଆଯାଏ । ଦୋଷୀକୁ ସୁଧାରିବା ଓ ଅନ୍ୟମାନଙ୍କୁ ଭବିଷ୍ୟତରେ କୌଣସି ଦୋଷ ନ କରିବା ପାଇଁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ହିଁ ଦଣ୍ଡର ଆବଶ୍ୟକତା ଅନୁଭୂତ ହୋଇଥାଏ । ସତ କାର୍ଯ୍ୟର ଆଦର୍ଶ ସ୍ଥାପନ ଉଦ୍ଦେଶ୍ୟରେ ଅସତ ଓ ଅନ୍ୟାୟ କାର୍ଯ୍ୟ ଦଣ୍ଡିତ ହେବା ଆବଶ୍ୟକ ।

ଦଣ୍ଡ ଦେଉଥିବା ଓ ପାଉଥିବା ଉଭୟ ବ୍ୟକ୍ତି ଅନେକ ସମୟରେ ଦଣ୍ଡର ପ୍ରଧାନ ଉଦ୍ଦେଶ୍ୟ ଭୁଲିଯାନ୍ତି । ଏହାହିଁ ବିଦ୍ୟାଳୟରେ ଦଣ୍ଡବିଧାନ-ବ୍ୟବସ୍ଥାର ପ୍ରଧାନ ତ୍ରୁଟି । ଛାତ୍ରକୁ ପଶୁପରି ପିଟି ନୋଳା ଫଟାଇଦେବା ଶିକ୍ଷକଙ୍କର ଉଦ୍ଦେଶ୍ୟ ହେବା ଅନୁଚିତ । ଛାତ୍ରର ସଂସ୍କାରହିଁ ଦଣ୍ଡବିଧାନର ପ୍ରଧାନ ଉଦ୍ଦେଶ୍ୟ । ମନ୍ଦ ଦଣ୍ଡ

ଗ୍ରହଣ କରିବା ପରେ ଦଣ୍ଡିତ ବ୍ୟକ୍ତିର ଭଲ ଦିଗରେ କୌଣସି ପରିବର୍ତ୍ତନ ନହେଲା—ତା'ହେଲେ ସେହି କ୍ଷେତ୍ରରେ ଦଣ୍ଡର ସଦୁଦ୍ଦେଶ୍ୟ ବିଫଳ ହେଲା ବୋଲି ବୁଝିବାକୁ ହେବ ।

ପ୍ରଧାନ ଶିକ୍ଷକ ଦଣ୍ଡଦେବା ପୂର୍ବରୁ ଦଣ୍ଡବିଧାନର ଯଥାର୍ଥତା ସମ୍ପର୍କରେ ଛାତ୍ର ମନରେ ଅନୁକୂଳ ମନୋଭାବ ସୃଷ୍ଟି କରିବାକୁ ଉଦ୍ୟମ କରିବା ଆବଶ୍ୟକ । ଛାତ୍ର ଅନୁଭବ କରିବା ଉଚିତ ଯେ ତା'ର ଦୋଷତ୍ରୁଟିର ସ୍ୱାଭାବିକ ପରିଣତି ସ୍ୱରୂପ ସେ ଦଣ୍ଡ ପାଉଛି । ସେ ସେଥିପାଇଁ ମଧ୍ୟ ଲଜ୍ଜିତ ଓ ଅନୁତପ୍ତ ହେବା ଉଚିତ । ଦଣ୍ଡ-ବିଧାନରେ ଦଣ୍ଡିତ ବ୍ୟକ୍ତିର ଏହି ମାନସିକ ପ୍ରତିକ୍ରିୟା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ । ଦଣ୍ଡବିଧାନ ସ୍ୱୟଂ ଏକ ଉଦ୍ଦେଶ୍ୟ ହୋଇ ନ ପାରେ; ଦୋଷତ୍ରୁଟିର ସଂସ୍କାର ପାଇଁ ଏହା ଏକ ପନ୍ଥା ମାତ୍ର । ତେଣୁ ଦଣ୍ଡଦେବା ପୂର୍ବରୁ ଶିକ୍ଷକ କି ଉଦ୍ଦେଶ୍ୟରେ ଦଣ୍ଡ ଦେଉଛନ୍ତି, ସେ ସମ୍ପର୍କରେ ଭଲଭାବରେ ଚିନ୍ତା କରିବା ଉଚିତ ଓ ଦଣ୍ଡିତ ବ୍ୟକ୍ତିଠାରେ ଦଣ୍ଡର ପ୍ରତିକ୍ରିୟା ଭଲ ଭାବରେ ଲକ୍ଷ୍ୟ କରିବା ଉଚିତ ।

ଯୋର ଜବରଦସ୍ତି ଓ ଦଣ୍ଡବିଧାନର ଭୟ ପ୍ରଦର୍ଶନ ଫଳରେ ଆମେ କିଛି ବନ୍ଦ କରିଦେଇ ପାରୁ; କିନ୍ତୁ କିଛି ନୂଆ ସୃଷ୍ଟି କରି-ପାରିବା ନାହିଁ । ଉଦାହରଣ ସ୍ୱରୂପ ଦଣ୍ଡର ଭୟରେ ଛାତ୍ର କୌଣସି ବଦଭ୍ୟାସ ବାଧ୍ୟହୋଇ ଛାଡ଼ି ଦେଇପାରେ; କିନ୍ତୁ କୌଣସି ସଦଭ୍ୟାସ ଗଠନ କରି ପାରିବ ନାହିଁ ।

ଦଣ୍ଡ କରିଆରେ ଛାତ୍ରମାନଙ୍କୁ ଶୃଙ୍ଖଳା ଶିକ୍ଷା ଦେବା ଆଦୌ ସମ୍ଭବ ନୁହେଁ । ବାସ୍ତବିକ ଶିକ୍ଷା, ସ୍ନେହ ଓ ପ୍ରେମର ସୁଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ ହେବା ଆବଶ୍ୟକ । ଭୟ ଉପରେ

ପ୍ରତିଷ୍ଠିତ ଶୃଙ୍ଖଳାହୀନ ଜୀବନର ଅନ୍ଧସନ୍ଧିକୁ ଭେଦ କରିବା କେବେ ସମ୍ଭବ ନୁହେଁ । ବାହ୍ୟ ଚାପ ଦ୍ୱାରା ଜୀବନର ଶୃଙ୍ଖଳାଶିକ୍ଷା ହୋଇପାରେ ନାହିଁ; ଏଥିପାଇଁ ଆତ୍ମ-ଶୃଙ୍ଖଳା ଓ କର୍ତ୍ତବ୍ୟ ବୋଧ ଆବଶ୍ୟକ ।

ଛାତ୍ରର ମଙ୍ଗଳ ସାଧନ ଉଦ୍ଦେଶ୍ୟରେ ଦଣ୍ଡ ଅନେକ କ୍ଷେତ୍ରରେ ଏକ ଅପରିହାର୍ଯ୍ୟ ଆବଶ୍ୟକତା ହୋଇପଡ଼େ । ବିଦ୍ୟାଳୟରେ "ସ୍ନେହର ଶାସନ" ପ୍ରତିଷ୍ଠା କରିବାକୁ ହେଲେ ଯେ ସମସ୍ତ ପ୍ରକାର ଦଣ୍ଡବିଧାନ ବ୍ୟବସ୍ଥାର ମୂଳୋଚ୍ଛେଦ କରିବାକୁ ହେବ ତାହା ନୁହେଁ । ଛାତ୍ରପ୍ରତି ଶିକ୍ଷକଙ୍କର ସମସ୍ତ ସ୍ନେହ ଅତୁଟ ରଖି ତାହାର କଲ୍ୟାଣ-ସାଧନ ଲକ୍ଷ୍ୟରେ ଦଣ୍ଡର ଆଶ୍ରୟ ନେବାକୁ ପଡ଼ିବ । ଦଣ୍ଡ ଦେବା-ଦ୍ୱାରା ଛାତ୍ରର ଶିକ୍ଷକଙ୍କ ପ୍ରତି ଯେପରି ବିଦ୍ୱେଷ ଓ ବିରାଗ ଭାବ ନ ବଢ଼େ ସେଥିପ୍ରତି ଶିକ୍ଷକ ବିଶେଷ ସାବଧାନ ହେବା ଉଚିତ । କିନ୍ତୁ ବହୁ କ୍ଷେତ୍ରରେ ଦଣ୍ଡବିଧାନ ଦ୍ୱାରା ଦଣ୍ଡ ଦେଉଥିବା ବ୍ୟକ୍ତି ପାଉଥିବା ବ୍ୟକ୍ତିଠାରୁ ଦୂରେଇ ଯାଏ ଏବଂ ସେମାନଙ୍କ ମଧ୍ୟରେ ଅଶ୍ରଦ୍ଧା ଓ ବୈରଭାବ ସୃଷ୍ଟିହୁଏ । ଶିକ୍ଷକ-ଛାତ୍ର ସମ୍ପର୍କ ଅସାବଧାନ ଦଣ୍ଡବିଧାନ ଦ୍ୱାରା ବିଶେଷ ଭାବରେ କ୍ଷୁର୍ଣ୍ଣ ହୁଏ । ତେଣୁ ଶିକ୍ଷକ ଅତି ସାବଧାନତା ସହକାରେ ଅସହିଷ୍ଣୁ ନ ହୋଇ ଓ ଛାତ୍ରର ମଙ୍ଗଳ କାମନା କରି ନିରପେକ୍ଷ ଭାବରେ ଦଣ୍ଡଦେବା ଉଚିତ ।

ଦଣ୍ଡଦେବା ଦ୍ୱାରାହିଁ ଅନେକ ସମୟରେ ଦଣ୍ଡବିଧାନର ସଦୁଦ୍ଦେଶ୍ୟ ବାଧାପ୍ରାପ୍ତ ହୋଇଥାଏ । ଏହାଦ୍ୱାରା ଶିକ୍ଷକ ଆଉ ଛାତ୍ରର ହୃଦୟକୁ ଜୟ କରିପାରନ୍ତି ନାହିଁ । ଛାତ୍ରର ଶିକ୍ଷକଙ୍କ ପ୍ରତି ଘୃଣା ଓ ଅଶ୍ରଦ୍ଧାଭାବ ବଢ଼ିବା ଦ୍ୱାରା ସେ ତାଙ୍କଠାରୁ କିଛି ଶିକ୍ଷା କରିବାର ଅବସ୍ଥାରେ ରହେନାହିଁ । ଶିକ୍ଷକଙ୍କଠାରୁ କିଛି ଗ୍ରହଣ କରିବା ଅବସ୍ଥାରେ ଛାତ୍ର ନିଜକୁ ରଖିବାକୁ ହେଲେ ତାଙ୍କୁ ଦେବତା

ପରି ତୁଳା ଓ ନିଜର ମା'ଙ୍କ ଭଳି ବିଶ୍ୱାସ କରୁଥିବା ଆବଶ୍ୟକ । ଶିକ୍ଷକ-ଛାତ୍ର ମଧ୍ୟରେ ଏଭଳି ସମ୍ପର୍କର ବିକାଶ ନ ହେଲେ ବାସ୍ତବ ଶିକ୍ଷା କେବେ ସମ୍ଭବ ହେବ ନାହିଁ ।

ଦଣ୍ଡଦେବା ଦ୍ୱାରା କିପରି ଦଣ୍ଡବିଧାନର ସଦୁଦ୍ଦେଶ୍ୟ ବ୍ୟାହତ ହୁଏ, ସେ ସମ୍ପର୍କରେ ଅନ୍ୟ ଏକ ଦୃଷ୍ଟାନ୍ତ ଦିଆ ଯାଇପାରେ । ଛାତ୍ରକୁ ଯେତେଯେତେ ଅଧିକ ଦଣ୍ଡ ଦିଆଯାଏ, ଦଣ୍ଡର ମୂଲ୍ୟ ସେତେ ସେତେ କମିଯାଏ । ସବୁବେଳେ ମାଡ ଖାଇ ଖାଇ କେତେକ ପିଲା ମାଡ଼ୁଆ ହୋଇଯାନ୍ତି । ଏହା ଫଳରେ ସେ ପିଲାର ଅନ୍ତରାତ୍ମାକୁ ଦଣ୍ଡ ଆଉ ସ୍ପର୍ଶ କରି ପାରେ ନାହିଁ ଓ ଏହାର କୌଣସି ପରିବର୍ତ୍ତନ ମଧ୍ୟ ସମ୍ଭବ ହୁଏ ନାହିଁ । ଏ ଅବସ୍ଥାରେ କେବଳ ମାଡ଼ ଦେବାହିଁ ସାରହୁଏ । ତେଣୁ ଦଣ୍ଡାସ୍ତ୍ରର ପ୍ରୟୋଗ ଯେତେ କମ୍‌ରୁ କମ୍ ହୁଏ, ଅଧିକରୁ ଅଧିକ ହିଁ ତା'ର ଉତ୍ତମ ପ୍ରତିକ୍ରିୟା ହୋଇଥାଏ ।

ଆମର ଭାଗବତକାର କହି ଯାଇଛନ୍ତି ——–

"ଦଣ୍ଡିବା ଶକ୍ତି ଯା'ର ଥାଇ, ସେ ପୁଣି କ୍ଷମା ଆଚରଇ" ଯାହା ହାତରେ ଦଣ୍ଡ ଦେବାର କ୍ଷମତା ରହିଛି, ସେ ଯେତେ କମରୁ କମ ତାହା ପ୍ରୟୋଗ କରେ ସେତେ ଭଲ । କୌଣସି କ୍ଷଣକୋଧୀ ଓ ଅସହିଷ୍ଣୁ ଶିକ୍ଷକ ମାଡ଼ ଦେଇ, ଛାତ୍ରର କେବେ କିଛି ପରିବର୍ତ୍ତନ ଆଣିପାରନ୍ତି ନାହିଁ । କିନ୍ତୁ ଅନ୍ୟ ପକ୍ଷରେ ଯେଉଁ ଶିକ୍ଷକ ଅତି ଶାନ୍ତ ଓ ସ୍ନେହୀ, ସେ ଥରେ ସାମାନ୍ୟ ଦଣ୍ଡ ଦେଇ ମଧ୍ୟ ଛାତ୍ରର ବିରାଟ ପରିବର୍ତ୍ତନ ଆଣି ପାରନ୍ତି । ଛାତ୍ରର ଭଲ ଦିଗରେ ପରିବର୍ତ୍ତନ ପାଇଁ କେତେ ପରିମାଣରେ ଦଣ୍ଡ ଦିଆଗଲା, ତାହାର କୌଣସି ମୂଲ୍ୟ ନ ଥାଏ; କିନ୍ତୁ କିଏ ଦଣ୍ଡଦେଲା ତାହାର ବିଶେଷ ଗୁରୁତ୍ୱ ଥାଏ । ବେତ ଏକ ନିର୍ଜିବ ପଦାର୍ଥ । ନିର୍ଜିବ ପଦାର୍ଥ ଜୀବନ୍ତ ଓ ବୁଦ୍ଧିବୃତ୍ତିଯୁକ୍ତ ମନୁଷ୍ୟର କୌଣସି ପରିବର୍ତ୍ତନ ଆଣିବା କେବେ ସମ୍ଭବ ନୁହେଁ ।

କିନ୍ତୁ କିଏ କେଉଁ ଦ୍ୱାରା ଦଣ୍ଡ ଦେବ, ତାହାହିଁ ଅସଲ ପ୍ରଶ୍ନ । ଯେ ଦଣ୍ଡଦେବ, ସେ ଯଦି ଦଣ୍ଡିତ ବ୍ୟକ୍ତିର ସଂସ୍କାର ସାଧନ ସକାଶେ ସମର୍ଥ——ତା' ହେଲେ ଦଣ୍ଡ ଅମୃତର ଫଳ ଫଳାଇବ; ନଚେତ ଫଳ ବିଷମୟ ହେବ ।

ଜଣେ କେହି ଅତି ଆପଣାର ଲୋକ ଦ୍ୱାରା କେବେ ଟିକିଏ କ'ଣ କହିଦେଲେ ତାହା ପ୍ରାଣକୁ କିପରି ଆଘାତ ଦିଏ, ତାହା ସମସ୍ତେ ଜାଣନ୍ତି । କୌଣସି ସ୍ନେହୀ ମା'ର ପଦେ କଥା ସନ୍ତାନର ଯେଉଁ ପରିବର୍ତ୍ତନ ଆଣିପାରେ, କ୍ରୋଧୀ ବାପ ବା ଶିକ୍ଷକଙ୍କର ହାତରେ ମାଡ଼ ତାହା ପାରେ ନାହିଁ । ଏସମ୍ପର୍କରେ ଗାନ୍ଧିଜୀଙ୍କର ଦୃଷ୍ଟାନ୍ତ ଦିଆଯାଇପାରେ । ଗାନ୍ଧିଜୀ କୁସଂସର୍ଗରେ ପଡ଼ି ମାଂସ ଖାଇଲେ, ବଡ଼ ବ୍ୟବହାର କଲେ ଓ ଶେଷରେ ଚୋରି କଲେ । କିନ୍ତୁ ବିବେକର ଦଂଶନରେ ଅନୁତପ୍ତ ହୋଇ, ସେ ତାଙ୍କ ବାପାଙ୍କୁ ଏକ ଦୋଷ-ସ୍ୱୀକାର-ପତ୍ର ଦେଲେ । ତାଙ୍କର ବାପା ସାମାନ୍ୟ କ୍ଷଣକୋପୀ ଥିଲେ । ଗାନ୍ଧୀଜୀ ନିଜର ଅକ୍ଷମଣୀୟ ଅପରାଧ ପାଇଁ ବାପାଙ୍କଠାରୁ କଠୋରତର ଦଣ୍ଡ ଆଶଙ୍କା କରୁଥିଲେ । କିନ୍ତୁ ପ୍ରିୟ ପୁତ୍ରର ନୈତିକ ସ୍ଖଳନରେ ବିଶେଷ ମର୍ମାହତ ହେବା ଦ୍ୱାରା ବାପାଙ୍କ ଚକ୍ଷୁରୁ କେବଳ ଦରଦର ଲୋତକ ଧାର ଝରିବାକୁ ଲାଗିଲା । ସେ ଗାନ୍ଧିଜୀଙ୍କୁ ଦଣ୍ଡଦେବା ବଦଳରେ କ୍ଷମା ଦେଲେ । ସେହି ଗୋଟିଏ ଘଟଣା ଯାହାର ପ୍ରଭାବରେ ମୋହନଚାନ୍ଦ, ମହାତ୍ମାରେ ପରିଣତ ହେଲେ । ବାପାଙ୍କର ଦୁଃଖ ଦେଖି ଓ କ୍ଷମା ଲାଭକରି ତାଙ୍କର ଯେପରି ନବ କଳେବର ସମ୍ଭବ ହେଲା । ଏହି ପରିବର୍ତ୍ତନ କୌଣସି ଦଣ୍ଡଦ୍ୱାରା କେବେ ସମ୍ଭବ ପର ହୋଇନଥାନ୍ତା ।

ମନସ୍ତତ୍ତ୍ୱଙ୍କ ଉପାୟରେ ପିଲାମାନଙ୍କର ଶିକ୍ଷା ଓ ଲାଳନ ପାଳନ ମୂଳରୁ ପରିଚାଳିତ ହେଲେ, ଶାରୀରିକ ଦଣ୍ଡର ଆବଶ୍ୟକତା ରହିବ ନାହିଁ । ଛାତ୍ର ଓ ଶିକ୍ଷକ ମଧ୍ୟରେ ମଧୁର ସମ୍ପର୍କର ଅଭାବ ଓ ଅବୁଝାମଣାହିଁ ଶାରୀରିକ ଦଣ୍ଡର ଆବଶ୍ୟକତା ସୃଷ୍ଟି କରେ । ତେଣୁ ଅଧିକ ଦଣ୍ଡର ଆଶ୍ରୟ ଶିକ୍ଷକଙ୍କର ଆଳସ୍ୟ ଓ ଅପାରଗତା ସୂଚାଇ ଦିଏ ।

ବିଦ୍ୟାଳୟରେ ଦଣ୍ଡ ଓ ସ୍ୱାଧୀନତା ଯେକୌଣସିଟି ସୀମା ଲଂଘନ କଲେ ପରିଣତି ଖରାପ ହୋଇପାରେ । ଅଧିକ ପରିମାଣରେ ଶାରୀରିକ ଦଣ୍ଡ ଉପରେ ଶିକ୍ଷକ ନିର୍ଭର କରିବା ଦ୍ୱାରା ଛାତ୍ର ଭୟାଳୁ, ନିର୍ଭରଶୀଳ ଓ ଆତ୍ମବିଶ୍ୱାସହୀନ ହୋଇଉଠେ, ଅନ୍ୟ ପକ୍ଷରେ ଅଖଣ୍ଡ ସ୍ୱାଧୀନତା ଉପଭୋଗ କରିବା ଦ୍ୱାରା ସେ ବିଦ୍ରୋହୀ, ପ୍ରତିକ୍ରିୟାଶୀଳ, ସ୍ୱେଚ୍ଛାଚାରୀ ଓ ବିଶୃଙ୍ଖଳ ହୋଇ ଗଢ଼ିଉଠେ । ଏହାଦ୍ୱାରା ସେ ସମାଜରେ ନିଜକୁ ଖାପ୍ ଖୁଆଇ ଚଳିବାକୁ ଅସମର୍ଥ ହୋଇଉଠେ । ତେଣୁ ବିଦ୍ୟାଳୟ-ପରିଚାଳନା କ୍ଷେତ୍ରରେ ଶୃଙ୍ଖଳ ସ୍ୱାଧୀନତାର ଗୁରୁତ୍ୱକୁ କୌଣସିମତେ ଅତିରଂଜିତ କରାଯାଇ ନ ପାରେ ।

ଦଣ୍ଡ ନିରପେକ୍ଷ ବିଦ୍ୟାଳୟ ପ୍ରତିଷ୍ଠା ମୌଳିକ ଶିକ୍ଷାର ଆଦର୍ଶ । ଏହା ସମ୍ଭବ ହେଲେ ହିଁ ଦଣ୍ଡ-ନିରପେକ୍ଷ ରାଷ୍ଟ୍ରରଚନା ମଧ୍ୟ ଆପେ ଆପେ ସମ୍ଭବ ହୋଇପାରିବ । ଏଥିପାଇଁ ପ୍ରତ୍ୟେକ ବିଦ୍ୟାଳୟରେ ସ୍ୱାୟତ୍ତଶାସନ ଓ ଆତ୍ମବିଚାରର ବ୍ୟବସ୍ଥା ପ୍ରଚଳନ କରିବାକୁ ହେବ । ବିଦ୍ୟାଳୟରୁ ହଠାତ ଶାରୀରିକ ଦଣ୍ଡକୁ ପୂରାପୂରି ଉଠାଇ ଦେବା ଅବଶ୍ୟ ଠିକ ନୁହେଁ । କେବଳ ଗୁରୁତର ଅପରାଧ କ୍ଷେତ୍ରରେ ସୀମା ଲଂଘନ ନ କରି, ଶାରୀରିକ ଦଣ୍ଡର ଆଶ୍ରୟ ନିଆଯାଇ ପାରେ । ଯେତେବେଳେ ଶିକ୍ଷକ ଛାତ୍ରକୁ ସୁଧାରିବାର ସମସ୍ତ

ଉପାୟ ପ୍ରୟୋଗ କରି ବିଫଳ ହେବେ, କେବଳ ସେହି କ୍ଷେତ୍ରରେ ସେ ଶାସ୍ତିରକ ଦଣ୍ଡର ଆଶ୍ରୟ ଗ୍ରହଣ କରିପାରନ୍ତି ।

ଅନେକ କ୍ଷେତ୍ରରେ ଦେଖାଯାଇଛି ଯେ; ଛାତ୍ର ଅପରାଧୀ ଭାବରେ 'ଛାତ୍ର-ପଞ୍ଚାୟତ' ସମ୍ମୁଖରେ ବିଚାର ପାଇଁ ଠିଆହେବାକୁ ଅପମାନଜନକ ବୋଧକରେ । ଗୁରୁଜୀ ଓ ବାପ,ମା' ଛାତ୍ରର ଅପରାଧ ବିଚାର କଲେ ସେଥିରେ ନୂତନତ୍ୱ କିଛି ନାହିଁ ଓ ତଦ୍ୱାରା ଛାତ୍ର ଲଜ୍ଜିତ ହୁଏ ନାହିଁ । "Forgiveness is the noblest revenge" କିନ୍ତୁ ନିଜର ସାଙ୍ଗସାଥୀଙ୍କ ସମ୍ମୁଖରେ ଅପରାଧୀ ଭାବରେ ଠିଆହେବା ଓ ସେମାନଙ୍କ ଉପସ୍ଥିତିରେ ପ୍ରଧାନ ଗୁରୁଜୀଙ୍କ ଦ୍ୱାରା ଦଣ୍ଡ ପାଇବାକୁ ସେ ଆଦୌ ପସନ୍ଦକରେ ନାହିଁ । ତେଣୁ ଅନୁଭୂତିରୁ ଦେଖାଯାଇଛି ଯେ ଯେଉଁ ଛାତ୍ର ନିଜକୁ ଅପରାଧୀ ମନେକରୁଥାଏ, ଛାତ୍ର-ପଞ୍ଚାୟତର ବିଚାର ପୂର୍ବରୁ ସେ ତାହାର ଅଭିଯୋଗୀ ସହିତ ଏକ ଆପୋଷ ସମାଧାନ କରିନିଏ । ଏହି ଆତ୍ମ-ବିଚାର-ବ୍ୟବସ୍ଥା ଛାତ୍ରକୁ ସଂଶୋଧନ କରିବାରେ ଯେପରି ପ୍ରଭାବ ପକାଏ, କେବଳ ଦଣ୍ଡବିଧିର ଆଶ୍ରୟ ଦ୍ୱାରା ତାହା ସମ୍ଭବ ହୁଏ ନାହିଁ ।

କ୍ରମାନୁସାରେ କେତେକ ଆଦର୍ଶ ଦଣ୍ଡର ସୂଚନା—

୧ । ଲଘୁ ଓ ପ୍ରାଥମିକ ଅପରାଧ ପାଇଁ କ୍ଷମା ପ୍ରଦାନ ।

୨ । ଅଭିଯୁକ୍ତ ଛାତ୍ରର ଅପରାଧ ପାଇଁ ଛାତ୍ର ସଭାରେ ସମବେତ ଦୁଃଖ ପ୍ରକାଶ ।

୩ । ଛାତ୍ରର ସଂଶୋଧନ ପାଇଁ ଭଗବାନଙ୍କ ଉଦ୍ଦେଶ୍ୟରେ ସମୂହ ପ୍ରାର୍ଥନା ।

୪ । ଅଭିଯୁକ୍ତ ଓ ଦୋଷୀ ସାବ୍ୟସ୍ତ ଛାତ୍ରର ପରିବର୍ତ୍ତନ ପାଇଁ ବିଦ୍ୟାଳୟର ଶିକ୍ଷକ ଓ ଛାତ୍ରମାନେ ଅନଶନ ଓ କଠିନ ଶ୍ରମକରି ଦୁଃଖବରଣ କରିବା ।

୫ । ଛାତ୍ର ଉପରେ ଅତ୍ୟଧିକ ଶାରୀରିକ ଶ୍ରମ ପକାଇବା ।

୬ । ଅଭିଯୁକ୍ତ ଓ ଅପରାଧୀ ଛାତ୍ର ଯଦି ନିଜ ଦୋଷ ତ୍ରୁଟିକୁ ନ ସୁଧାରିବାର ଦେଖାଯିବ, ତା'ହେଲେ ବିଦ୍ୟାଳୟର ଛାତ୍ର-ସମାଜ ତାକୁ ବାସନ୍ଦ (Boycott) କରି ପାରନ୍ତି ।

୭ । ଅପରାଧୀ ଓ ଦୁଷ୍ଟ ଛାତ୍ରମାନଙ୍କୁ ମୁଖ୍ୟମନ୍ତ୍ରୀ, ପ୍ରଧାନ ବିଚାରପତି ଆଦି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ମଧ୍ୟ ଅର୍ପଣ କରାଯାଇ ପାରେ ।

୮ । ବାପମା' ବା ଅଭିଭାବକଙ୍କୁ ଡକାଇ ଛାତ୍ରର ଅପରାଧ ଓ ସଂସ୍କାର ସମ୍ପର୍କରେ ଆଲୋଚନା କରାଯାଇପାରେ । ପରେ ଛାତ୍ରର ପରିବର୍ତ୍ତନ ଦିଗରେ ଆବଶ୍ୟକ କାର୍ଯ୍ୟାନୁଷ୍ଠାନ କରିବା ପାଇଁ ଗୁରୁଜୀ ତାଙ୍କୁ ଆବଶ୍ୟକ ପରାମର୍ଶଦେବା ଉଚିତ ।

୯ । ସ୍ୱଭାବ-ବିବରଣୀ (Conduct Register)ରେ ଅପରାଧୀ ଛାତ୍ର ନିଜର ଅପରାଧ ସ୍ୱୀକାର କରି ନିଜର ଦସ୍ତଖତ ଦେବା ଉଚିତ ।

୧୦ । ଏସବୁ ଉପାୟ ସଫଳ ନ ହେଲେ ପ୍ରଧାନ ଗୁରୁଜୀ ଅପରାଧୀ ଛାତ୍ରକୁ ତାର ଭବିଷ୍ୟତରେ ତୀବ୍ର ଶାରୀରିକ ଦଣ୍ଡଦେବାର ଧମକ ଓ ଚେତାବନୀ (Warning) ଦେବା ଉଚିତ ।

୧୧ । ଛାତ୍ରସଭା ଓ ଗୁରୁଜୀମଣ୍ଡଳ ସମ୍ମୁଖରେ ଅପରାଧୀ ଛାତ୍ରକୁ ଶାରୀରିକ ଦଣ୍ଡ ଦିଆଯିବ ।

୧୨ । ଶାରୀରିକ ଦଣ୍ଡ ଦ୍ୱାରା କୌଣସି ସୁଫଳ ନ ଫଳିଲେ, ଶିକ୍ଷକ ଅପରାଧୀ ଛାତ୍ରକୁ ଅନ୍ୟ ଅନୁଷ୍ଠାନରେ ଶିକ୍ଷାଲାଭ କରିବା ପାଇଁ ପରାମର୍ଶ ଦେଇ ବିଦାୟ ଦେଇ ପାରନ୍ତି । ଏଭଳି ପରିସ୍ଥିତିରେ ଅପରାଧୀ ଛାତ୍ରର ଅଭିଭାବକଙ୍କ ସହିତ ପରାମର୍ଶକରି ଯାହାକିଛି କରିବାକୁ ହେବ । ଯଦି ଉଭୟଙ୍କ ମିଳିତ ଉଦ୍ୟମ ବ୍ୟର୍ଥ ପ୍ରମାଣିତ ହେବ, ତା' ହେଲେ ତାକୁ ଅନ୍ୟ ବିଦ୍ୟାଳୟକୁ ସ୍ଥାନାନ୍ତର କରିବା ପାଇଁ ପ୍ରଧାନ ଶିକ୍ଷକ ମହୋଦୟ ବାଧ-

ହୋଇ ଛାତ୍ରର ବାପମା' ବା ଅଭିଭାବକଙ୍କୁ ଅବଶ୍ୟକ ପରାମର୍ଶ ଦେବେ ।

ଉପର ସୂଚିତ ଦଣ୍ଡମାନଙ୍କ ମଧ୍ୟରୁ କେଉଁ ଅପରାଧୀ ପ୍ରତି କେଉଁ ପରିସ୍ଥିତିରେ କେଉଁଟି ପ୍ରୟୋଗ କରିବାକୁ ହେବ—ତାହା ପ୍ରଧାନ ଶିକ୍ଷକଙ୍କର ସାଧାରଣ ବିଚାରବୁଦ୍ଧି, ଦକ୍ଷତା ଓ ଅଭିଜ୍ଞତା ଉପରେ ନିର୍ଭର କରେ । ଏ ଦିଗରେ କୌଣସି ସ୍ଥିର ଓ ସ୍ଥାୟୀ ସିଦ୍ଧାନ୍ତ ଦେବା ସମ୍ଭବ ନୁହେଁ । କିନ୍ତୁ ଶାରୀରିକ ଶାସ୍ତିବିଧାନ ଯେ ଏକ ଦୁଇଧାରିଆ ତୀକ୍ଷ୍ଣ ଅସ୍ତ୍ର ଓ ଏଥିପାଇଁ ବିଶେଷ ସାବଧାନତା ଆବଶ୍ୟକ—ଏହା ପ୍ରଧାନ ଶିକ୍ଷକ ମହୋଦୟ କେବେହେଲେ ବିସ୍ମୃତ ହେବା ଅନୁଚିତ ।



# ଆଦର୍ଶ ପରୀକ୍ଷା

ଆଧୁନିକ ପରୀକ୍ଷା-ପ୍ରଣାଳୀ ଦ୍ୱାରା ଛାତ୍ରର ସମଗ୍ର ବ୍ୟକ୍ତିତ୍ୱର ବିକାଶ ପାଇଁ କରାଯାଇ ପାରୁନାହିଁ । କେତେକ ନିର୍ଦ୍ଦିଷ୍ଟ ପାଠ୍ୟପୁସ୍ତକ ଜରିଆରେ ଏକ ନିର୍ଦ୍ଦିଷ୍ଟ ସମୟରେ ପରୀକ୍ଷା କରାଯାଉଥିବାରୁ ବ୍ୟତୀତ ଛାତ୍ରମାନେ କେତେକ ନିର୍ଦ୍ଧାରିତ ପୁସ୍ତକ ଓ କେତେକ ନୋଟ୍ ଘୋଷିବା ବାସ୍ତବ ଜ୍ଞାନ ଆହରଣରେ ଆଗ୍ରହୀ ହେଉ ନାହାନ୍ତି । ଆଉମଧ୍ୟ ବର୍ଷ ଶେଷରେ ପରୀକ୍ଷା ହେଉଥିବାରୁ ଛାତ୍ରମାନେ ସେହି ସମୟରେ କେବଳ ପଢ଼ାପଢ଼ିରେ ବିଶେଷ ବ୍ୟସ୍ତ ରହୁଛନ୍ତି ଓ ଅନ୍ୟ ସମୟରେ ହସ ଖୁସିରେ ସମୟ କାଟୁଛନ୍ତି ତେଣୁ କେତେକ ନିର୍ଦ୍ଧାରିତ ପୁସ୍ତକ ପଠନ ବାଧ୍ୟବନ୍ଧା ଶିକ୍ଷାକ୍ଷେତ୍ରରୁ ଯେତେ ଶୀଘ୍ର ଉଠାଇ ଦିଆଯାଏ, ସେତେ ମଙ୍ଗଳ । ଶ୍ରେଣୀ ଉପଯୋଗୀ ବିଭିନ୍ନ ପୁସ୍ତକ ପଢ଼ି ଜୀବନୋପଯୋଗୀ ଶିକ୍ଷାର ମାନ ବଢ଼ାଇବା ଉପରେ ସମସ୍ତ ଗୁରୁତ୍ୱ ଦିଆଯିବା ଉଚିତ । ଏଥିପାଇଁ ବିଦ୍ୟାଳୟରେ 'ପୁସ୍ତକାଳୟ-ବ୍ୟବସ୍ଥା' ଉଚ୍ଚ ଆସନ ଲାଭ କରିବା ଦରକାର ।

ଆଜିକାଲି କେତେକ ଛାତ୍ର ନିର୍ଦ୍ଧାରିତ ପୁସ୍ତକ ଭଲ ଭାବରେ ପଢ଼ିବାକୁ ମଧ୍ୟ ସମୟ ପାଆନ୍ତି ନାହିଁ । ପ୍ରାୟ ପ୍ରତ୍ୟେକ ବର୍ଷ ଗତାନୁଗତିକ ଭାବରେ ନିର୍ଦ୍ଧାରିତ ପୁସ୍ତକରୁ ଗୋଟିଏ ଧରଣର ପ୍ରଶ୍ନ

ପରୀକ୍ଷାରେ ପଡ଼ୁଥିବାରୁ, ସେମାନେ ସେହି ବର୍ଷ ସମ୍ଭାବନା ଥିବା ପ୍ରଶ୍ନଗୁଡ଼ିକର ପଥ ପଥ ଉତ୍ତର ଦେବାପାଇଁ ପ୍ରସ୍ତୁତ ହେଉଛନ୍ତି । ଏହା ଫଳରେ ଅଳ୍ପ ଶ୍ରମ ଓ ସମୟରେ ପରୀକ୍ଷାରେ କୃତକାର୍ଯ୍ୟ ହେବା କେତେକ ପରିମାଣରେ ସହଜ ହୋଇ ଉଠୁଛି । ଏହାପରେ ଛାତ୍ରମାନଙ୍କୁ ସାହାଯ୍ୟ କରିବା ପାଇଁ ବଜାରରେ ନାନା ପ୍ରକାର ସାହାଯ୍ୟକାରୀ ପୁସ୍ତକ (Key-Books) ମଧ୍ୟ ମିଳୁଅଛି । ଏହା ଫଳରେ ଅଳ୍ପଶ୍ରମ ଓ ସାଧନାରେ କୃତିତ୍ୱ ହାସଲ, କେତେକ କ୍ଷେତ୍ରରେ ସମ୍ଭବ ହେଉଥିଲେ ମଧ୍ୟ ବାସ୍ତବ ଜ୍ଞାନର ବିକାଶ ସମ୍ଭବ ହେଉନାହିଁ । ଆଉ ଏହାଦ୍ୱାରା ମଧ୍ୟ ଛାତ୍ରମାନଙ୍କର ବାସ୍ତବ ବିକାଶ ଠିକ୍ ଠିକ୍ ଯାଞ୍ଚ କରିହେଉ ପାରୁନାହିଁ । ଏହାର ପ୍ରତିକାର ପାଇଁ ପ୍ରଶ୍ନ ପତ୍ରଗୁଡ଼ିକ ବାସ୍ତବ, ବ୍ୟାବହାରିକ ଓ ଭିନ୍ନ ଭିନ୍ନ (Varied) ହେବା ବାଞ୍ଛନୀୟ । ପ୍ରଶ୍ନଦ୍ୱାରା ଛାତ୍ରର ଯେପରି ସାଧାରଣ ଜ୍ଞାନ, ଜୀବନୋପଯୋଗୀ ଦକ୍ଷତା ଓ ସର୍ବାଙ୍ଗୀନ ବିକାଶ ଠିକ୍ ଠିକ୍ ମାପ କରିହେଉ ପାରିବ, ସେଥିପ୍ରତି ପ୍ରଶ୍ନ କର୍ତ୍ତାମାନେ ବିଶେଷ ସଜାଗ ରହିବା ବିଧେୟ ।

ବର୍ଷ ମଧ୍ୟରେ କେବଳ ଥରେ ବା ଦୁଇଥର ନିର୍ଦ୍ଦିଷ୍ଟ ସମୟରେ ପରୀକ୍ଷା କରା ନ ଯାଇ ଅତର୍କିତ ଭାବରେ ପ୍ରତି ମାସରେ ଥରେ ବା ଦୁଇଥର ସାମୟିକ ପରୀକ୍ଷା (Test) କରାଗଲେ ଛାତ୍ରମାନେ ପଢ଼ା ପଢ଼ି ପ୍ରତି ଅଧିକ ମନୋଯୋଗୀ ହୋଇ ପାରନ୍ତେ । କିନ୍ତୁ ଏହି ସାମୟିକ ପରୀକ୍ଷା ଉପରେ ଯଥାଯଥ ଗୁରୁତ୍ୱ ଦିଆଯିବା ଉଚିତ ଓ ସେ ସବୁର ଫଳାଫଳ ଉପରେ ଛାତ୍ରର କୃତିତ୍ୱ ନିର୍ଭର କରିବା ଉଚିତ । ଏହା ହେଉ ନ ଥିବାରୁ ସାମୟିକ ପରୀକ୍ଷା ପ୍ରତି ଛାତ୍ରମାନେ ଆଦୌ ଗୁରୁତ୍ୱ ଦେଉ ନାହାନ୍ତି । ଛାତ୍ରମାନଙ୍କର କୃତିତ୍ୱ କେବଳ ବର୍ଷର ଶେଷ ପରୀକ୍ଷା ଉପରେ ନିର୍ଭର ନକରି ବିଶେଷ ଭାବରେ ସାମୟିକ ପରୀକ୍ଷା, ଛାତ୍ରମାନଙ୍କର ବାର୍ଷିକ କାର୍ଯ୍ୟକଳାପ, ନିଜର ପ୍ରଗତି ସମ୍ପର୍କରେ

ଅଙ୍କିତ ଚୂର୍ଟଚିତ୍ର, ହିସାବ ଫର୍ଦ୍ଦ ( Records ) ଖାତାପତ୍ର ଏବଂ ସଚ୍ଚୋଚର ଗୁରୁଜୀମାନଙ୍କର ମତାମତ ଉପରେ ନିର୍ଭର କରିବା ଆବଶ୍ୟକ ।

ଛାତ୍ର କେତେ ବିଷୟ ଘୋଷି ମୁଖସ୍ଥ କରିପାରନ୍ତି; ତାହା ଜାଣିବା ହିଁ ପ୍ରଚଳିତ ପରୀକ୍ଷା ପ୍ରଣାଳୀର ମୁଖ୍ୟ ଉଦ୍ଦେଶ୍ୟ ବୋଲି ମନେହୁଏ । କିନ୍ତୁ ବାସ୍ତବରେ କୌଣସି ଛାତ୍ର ଲବ୍ଧ ଜ୍ଞାନକୁ ଜୀବନ ସମସ୍ୟାବଳୀର ସମାଧାନରେ କେତେଦୂର ପ୍ରୟୋଗ କରି ସଫଳତା ହାସଲ କରି ପାରିଲେ—ତାହା ନିର୍ଣ୍ଣୟ କରିବା ହିଁ ପରୀକ୍ଷାର ମୁଖ୍ୟ ଲକ୍ଷ୍ୟ ହେବା ଉଚିତ । କେବଳ ପରୀକ୍ଷାର ପ୍ରଣାଳୀ ଓ ଉଦ୍ଦେଶ୍ୟର ପରିବର୍ତ୍ତନଦ୍ୱାରା ଆଜିକାଲି ଶିକ୍ଷାକ୍ଷେତ୍ରରେ ଥିବା ଅନେକ ଦୁରୂହ ସମସ୍ୟାର ସ୍ୱାଭାବିକ ସମାଧାନ ସମ୍ଭବ ହେବ । ଏଥିପାଇଁ ବିଦ୍ୟାଳୟମାନଙ୍କରେ ବ୍ୟାବହାରିକ ଓ ଜୀବନୋପଯୋଗୀ ଶିକ୍ଷା ବ୍ୟବସ୍ଥା ପ୍ରୟୋଗ କରିବାକୁ ହେବ । ଛାତ୍ରମାନେ ବିଭିନ୍ନ କାମଦାମ କରିବେ ଏବଂ ଅର୍ଜିତ ଅଭିଜ୍ଞତାର ଠିକ୍ ଠିକ୍ ହିସାବ ଓ ବିବରଣୀ ରଖିବେ । ବ୍ୟାବହାରିକ ଶିକ୍ଷା ପଦ୍ଧତିରେ କେବଳ ପୁସ୍ତକ ବା ନୋଟ୍ ମୁଖସ୍ଥକରି ସଫଳତା ଲାଭ କରିବା ଆଦୌ ସମ୍ଭବ ନୁହେଁ । ସଫଳତା ଲାଭକରିବାକୁ ହେଲେ ପୁସ୍ତକଗତ ମାତକୁ ଜୀବନସମସ୍ୟାର ସମାଧାନ ସକାଶେ କାର୍ଯ୍ୟର ରୂପ ଦାନ କରିବାକୁ ହେବ ।

ଆଧୁନିକ ପରୀକ୍ଷା ପ୍ରଣାଳୀର କୁଚରଣାମନ୍ତ୍ରୁ ମୁକ୍ତିଲାଭ କରିବାକୁ ହେଲେ, ଶିକ୍ଷାର ପରିସରକୁ ବ୍ୟାପକ କରିବାକୁ ହେବ । କେବଳ କେତେଖଣ୍ଡି ନିର୍ଦ୍ଧାରିତ ପୁସ୍ତକ ଅଧ୍ୟୟନ କଲେ ଶିକ୍ଷା ସମାପ୍ତ ହେବ ନାହିଁ । କୌଣସି ଶ୍ରେଣୀର ମନୋପଯୋଗୀ ଯେ କୌଣସି ସମସ୍ୟା ବା ପୁସ୍ତକରୁ ପରୀକ୍ଷାରେ ପ୍ରଶ୍ନ ଆସିପାରେ । ଛାତ୍ରମାନେ ପରୀକ୍ଷାରେ ମନଇଚ୍ଛା ବହି ଖାତା ପତ୍ର ବ୍ୟବହାର କରି ନିର୍ଦ୍ଦିଷ୍ଟ

ସମସ୍ତ ମଧ୍ୟରେ ପ୍ରଶ୍ନର ଉତ୍ତର ଦେବାକୁ ଅନୁମତି ପାଇବେ । ପରୀକ୍ଷା ବ୍ୟବସ୍ଥାରେ ଏହି ପ୍ରକାର ପରିବର୍ତ୍ତନ ଦ୍ୱାରା ଛାତ୍ରମାନଙ୍କ ଶିକ୍ଷା ଆଉ ସୀମାବଦ୍ଧ ହେବ ନାହିଁ ଏବଂ ଆବଶ୍ୟକ ପୁସ୍ତକରୁ ବ୍ୟବହାର କରି କୌଣସି ଜୀବନ-ସମସ୍ୟାର ସମାଧାନ କରିବାକୁ ସେମାନେ ସମର୍ଥ ହୋଇ ପାରିବେ ।

ଛାତ୍ରର ମାନ ନିର୍ଦ୍ଧାରଣ କରିବା, ସେ ପୁସ୍ତକଗତ ମତକୁ କେତେଦୂର କାର୍ଯ୍ୟ କ୍ଷେତ୍ରରେ ଲଗାଇପାରୁଛି ତାହା ଜାଣିବା ଏବଂ ସେ ସ୍ୱାଧୀନ ଭାବରେ ଚିନ୍ତା ଓ ବିଚାର କରି କୌଣସି ଦାୟିତ୍ୱ ନେଇ ଆଣି ଥୋଇ ପାରୁଛି କି ନାହିଁ ତାହା ଦେଖିବା ହେଉଛି ପରୀକ୍ଷାର ମୁଖ୍ୟ ଉଦ୍ଦେଶ୍ୟ । ପରୀକ୍ଷାର ପ୍ରଣାଳୀ ଏପରି ହେବା ଉଚିତ ଯେପରିକି ଛାତ୍ରର ସମଗ୍ର ବ୍ୟକ୍ତିତ୍ୱର ବିକାଶ ଠିକ୍ ଠିକ୍ ଯାଞ୍ଚ୍ କରାଯାଇ ପାରିବ ।

ପ୍ରଦର୍ଶନୀକୁ ପରୀକ୍ଷାର ଏକ ବାସ୍ତବ ଓ ଫଳପ୍ରଦ ମାଧ୍ୟମ ରୂପେ ଗ୍ରହଣ କରାଯାଇ ପାରେ । ପରୀକ୍ଷାର୍ଥୀ ଛାତ୍ରକୁ ପ୍ରଦର୍ଶନୀ ମଣ୍ଡପର ଏକ ନିର୍ଦ୍ଦିଷ୍ଟ ଅଂଶ ପୂରାପୁରି ଛାଡ଼ି ଦିଆଯିବା ଉଚିତ । ସେହି ଶୂନ୍ୟ ସ୍ଥାନକୁ ପୂରଣ କରିବା ପାଇଁ ସେ ତା'ର ସମସ୍ତ ଶକ୍ତି ଓ ଦକ୍ଷତା ପ୍ରୟୋଗ କରିବାକୁ କୁହାଯିବ । ସେ ସେଥିରେ ନିଜର ବାର୍ଷିକ ବିକାଶର ଏକ ସ୍ପଷ୍ଟ ଚିତ୍ର ଫୁଟାଇବାକୁ ଚେଷ୍ଟା କରିବ । ସେହି ପ୍ରଦର୍ଶନୀରେ ତାହାର ଖାତାପତ୍ର, ବର୍ଷ ମଧ୍ୟରେ ଅଙ୍କିତ ଚିତ୍ର ଓ ଛବି, କରିଥିବା ବିଭିନ୍ନ ହାତକାମ, ନିଜେ ଉତ୍ପାଦନ କରିଥିବା କୃଷି ଓ ଶିଳ୍ପଜାତ ଦ୍ରବ୍ୟ ଆଦି ପ୍ରଦର୍ଶିତ ହେବ । ପ୍ରତ୍ୟେକ ଛାତ୍ର ପାଇଁ ଏହିଭଳି ନିର୍ଦ୍ଦିଷ୍ଟ ଅଂଶ ଛାଡ଼ି ଦିଆଯିବ ଏବଂ ସାଜସଜ୍ଜା ପରେ କେଉଁ ଛାତ୍ରର ପ୍ରଗତି ଓ କୃତିତ୍ୱ ଅଧିକ ଦକ୍ଷତା ସହକାରେ ଫୁଟାଯାଇ ପାରିଛି—ତାହା ବିଚାର କରାଯିବ ।

ପରୀକ୍ଷା-ବ୍ୟବସ୍ଥାରେ ଲିଖିତ ଓ ମୌଖିକ ଉଭୟ ପ୍ରଣାଳୀକୁ ଉପ୍ରାହ୍ୟତ କରିବାକୁ ହେବ । କେତେକ ଲୋକ ଭଲ ଭାବରେ କହି ପାରନ୍ତି ନାହିଁ ଅଥଚ ଲେଖି ପାରନ୍ତି । ସେହିଭଳି ଅନ୍ୟ କେତେକ ଲୋକ ଲେଖାରେ ନିଜର ମନୋଭାବ ଭଲ ପ୍ରକାଶ କରି ପାରନ୍ତି; କିନ୍ତୁ ମୌଖିକ ଆଲୋଚନାରେ ପାରନ୍ତି ନାହିଁ । ଜୀବନରେ ଲେଖିବା ଓ କହିବା ଉଭୟ ଶକ୍ତିର ବିଶେଷ ଆବଶ୍ୟକତା ଥିବାରୁ ଉଭୟ ଦିଗ ଉପରେ ଯଥାଯଥ ଗୁରୁତ୍ୱ ଦିଆଯିବା ଉଚିତ ।

ପରିକ୍ଷାର୍ଥୀ ସ୍ୱାଧୀନ ଭାବରେ ଚିନ୍ତାକରି କୌଣସି ସମସ୍ୟାର ସମାଧାନ ଉଦ୍ଦେଶ୍ୟରେ ନିଜେ ଉପାୟ ଉଦ୍ଭାବନ କରିପାରୁଛି କି ନାହିଁ ପରୀକ୍ଷା ଦ୍ୱାରା ତାହା ଯାଞ୍ଚ କରାଯିବା ଉଚିତ୍ । ଅଧିକ ମାତ୍ରାରେ ପୁସ୍ତକପାଠ ଦ୍ୱାରା ଆଜି କାଲି ଛାତ୍ରମାନଙ୍କର ସ୍ୱାଧୀନ ଚିନ୍ତାର ଶକ୍ତି ଓ ନିଜ ଉପରେ ନିଜେ ନିର୍ଭର କରିବା ଗୁଣ ଅତ୍ୟନ୍ତ ଅତ୍ୟନ୍ତ ଲୋପ ପାଇ ଯାଉଛି । ଲିଖିତ ପରୀକ୍ଷା ଦ୍ୱାରା ମଧ୍ୟ ଏହି ମାନବିକ ଗୁଣଗୁଡ଼ିକର ଠିକ୍ ଠିକ୍ ପରଖ କରାଯିବା ଆଦୌ ସମ୍ଭବ ନୁହେଁ । ଏଥିପାଇଁ ବିଭିନ୍ନ ଯୋଜନା (Project) ଓ କାର୍ଯ୍ୟର ଆଶ୍ରୟ ନେବାକୁ ହେବ ।

ସଂକ୍ଷେପରେ କହିବାକୁ ଗଲେ ଛାତ୍ରର ସର୍ବାଙ୍ଗୀନ ବିକାଶକୁ ଠିକ୍ ଠିକ୍ ଯାଞ୍ଚ କରିବାକୁ ହେଲେ ନିମ୍ନଲିଖିତ ମନସ୍ତାତ୍ତ୍ୱିକ ଉପାୟଗୁଡ଼ିକର ଆଶ୍ରୟ ଗ୍ରହଣ କରିବାକୁ ହେବ ।

୧ । ଶ୍ରେଣୀ-ଉପଯୋଗୀ ବିଭିନ୍ନ ବୁଦ୍ଧିମାପକ ପ୍ରଶ୍ନ ।

୨ । ଭାବପ୍ରକାଶ ଶକ୍ତି ଓ ସାଧାରଣଜ୍ଞାନ ଜାଣିବା ପାଇଁ ମୌଖିକ ପରୀକ୍ଷା ।

୩ । ଛାତ୍ରର ବ୍ୟକ୍ତିଗତ ଖାତାପତ୍ର ଓ ହିସାବ ଫର୍ଦ୍ଦର ସମୀକ୍ଷା ।

୪ । ଛାତ୍ର ସମ୍ପର୍କରେ ଗୁରୁଜୀ ନିୟମିତ ପୂରଣ କରୁଥିବା ଖାତାପତ୍ରର

ଯାଞ୍ଚ—ଏହାଦ୍ୱାରା ଛାତ୍ରର ସ୍ୱଭାବ ଓ ଚରିତ୍ର ସମ୍ପର୍କରେ ସୂଚନା ମିଳେ ।

୫ । ବାସ୍ତବ ଜୀବନ-ସମସ୍ୟାର ସମ୍ମୁଖୀନ କରାଇ ପରିବର୍ତ୍ତିତ ପରିସ୍ଥିତିରେ ଛାତ୍ରର ପ୍ରତିକ୍ରିୟା ଲକ୍ଷ୍ୟ କରିବାକୁ ହେବ ।

୬ । ଛାତ୍ରର ବ୍ୟକ୍ତିଗତ ଜୀବନଯାପନର ଢଙ୍ଗ ଓ ଜୀବନ ସମ୍ବନ୍ଧରେ ବୈଜ୍ଞାନିକ ଦୃଷ୍ଟିକୋଣ ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେବାକୁ ହେବ ।

୭ । ଛାତ୍ର ବାସ୍ତବ କାର୍ଯ୍ୟ-ଯୋଜନା କରି ସେଥିରେ କେତେଦୂର ସଫଳତା ଲାଭ କରିବାକୁ ସମର୍ଥ ହେଉଛି ତାହାର ପରୀକ୍ଷା ।

୮ । ବାସ୍ତବ ସୃଜନାତ୍ମକ (Creative) ଓ କଳାତ୍ମକ (Artistic) କାର୍ଯ୍ୟରେ ଛାତ୍ରର ନିପୁଣତା ହାସଲ ।

୯ । ତର୍କସଭା, ଦଳଗତ ଆଲୋଚନା ଓ ସଭାସମିତିରେ ନେତୃତ୍ୱ ନେବା ଶକ୍ତିର ଯାଞ୍ଚ ।

୧୦ । ଛାତ୍ରର ଲୋକ ପ୍ରିୟତା ଏବଂ ସେବା ଓ ସମୂହ ମନୋଭାବର ପରଖ ।

୧୧ । ପ୍ରଦର୍ଶନୀରେ ଛାତ୍ରର ଦକ୍ଷତା ଓ ବିକାଶ କେତେଦୂର ପ୍ରଦର୍ଶିତ ହୋଇ ପାରୁଛି ତାହାର ପରଖ ।

୧୨ । ଛାତ୍ରର ସମାଜସେବା ଓ ଗ୍ରାମସଂଗଠନ କାର୍ଯ୍ୟରେ ଦକ୍ଷତା ହାସଲ ।

୧୩ । ଛାତ୍ରର ସ୍ୱାବଲମ୍ବନ-ଶକ୍ତିର ପରଖ ।

---

# ବିଦ୍ୟାଳୟ-ପରିଦର୍ଶନ

ବିଦ୍ୟାଳୟ-ପରିଦର୍ଶକ ନିଜକୁ ସାଧାରଣ ଶିକ୍ଷକମାନଙ୍କ ଠାରୁ ଭିନ୍ନ ଓ ତାଙ୍କର ସ୍ଥାନ ବହୁ ଉଚ୍ଚରେ ବୋଲି ମନେ କରିବା ଠିକ୍ ନୁହେଁ । ଶିକ୍ଷକ ଓ ପରିଦର୍ଶକ ଉଭୟଙ୍କର ସ୍ୱାର୍ଥ ସମାନ । ଶିକ୍ଷକ ଓ ପରିଦର୍ଶକଙ୍କ ମଧ୍ୟରେ ଭୟର ସମ୍ପର୍କ ବଦଳରେ ସ୍ନେହ, ସଦିଚ୍ଛା ଓ ସହାନୁଭୂତିର ପୂର୍ଣ୍ଣ ସମ୍ପର୍କ ପ୍ରତିଷ୍ଠିତ ହେବା ବାଞ୍ଛନୀୟ । ପରିଦର୍ଶକ ଶିକ୍ଷକ ବିଦ୍ୟାଳୟ ମଧ୍ୟରେ ଯୋଗସୂତ୍ର ଭଳି କାମ କରିବା ଉଚିତ । ସେ ଶିକ୍ଷକମାନଙ୍କୁ ଆଦର୍ଶ ନେତୃତ୍ୱ ଦେବାର ଶକ୍ତି ହାସଲ କରିବା ଆବଶ୍ୟକ । ସେ ଏଭଳି ଦକ୍ଷତାର ସହିତ ବିଭିନ୍ନ ଶିକ୍ଷା-ସମସ୍ୟାର ସମାଧାନ କରିବେ, ଯେପରିକି ଶିକ୍ଷକମାନଙ୍କର ସ୍ୱତଃ ସମ୍ମାନର ପାତ୍ର ହୋଇ ପାରିବେ ।

ପରିଦର୍ଶକ ମହୋଦୟ ଶିକ୍ଷକମାନଙ୍କର କେବଳ ଦୋଷ ତ୍ରୁଟି ଖୋଜି ବୁଲିବା ଠିକ୍ ନୁହେଁ । ସେ ଶିକ୍ଷକମାନଙ୍କ ସହିତ ରହି ସେମାନଙ୍କର ଅଭାବ ଅସୁବିଧା ସମ୍ପର୍କରେ ପ୍ରତ୍ୟକ୍ଷ ଅଭିଜ୍ଞତା ହାସଲ କରିବା ଉଚିତ । ସମସ୍ତ ସହାନୁଭୂତି ସହକାରେ ବାସ୍ତବ ଅଭାବ ଓ ଅସୁବିଧା ଗୁଡିକର, ବିଚାରକରି ସେ ସବୁ କିପରି ଅତିକ୍ରମ କରିବାକୁ ହେବ—ଶିକ୍ଷକମାନଙ୍କୁ ସେ ଦିଗରେ ସେ ଆବଶ୍ୟକ ପରାମର୍ଶ

ହେବା ଉଚିତ । ବେଳେ ବେଳେ ମଧ୍ୟ, ଗୃହସ୍ଥମାନଙ୍କ ସହିତ ରହି ଅଭାବ ଅସୁବିଧା ସବୁ ନିଜେ ଅନୁଭବ କରିବାକୁ ହେବ—ସେ ଦିଗରେ ସେ ଆଦର୍ଶ ଦେଖାଇବା ଉଚିତ ।

ବିଭିନ୍ନ ଶିକ୍ଷା-ସମସ୍ୟାର ସମାଧାନ ଦିଗରେ ବିଦ୍ୟାଳୟ ଗୁଡ଼ିକ ଗୋଟିଏ ଗୋଟିଏ ଗବେଷଣାଗାର ହେବା ଆବଶ୍ୟକ । ସ୍ଥାନୀୟ ସମସ୍ୟା ଗୁଡ଼ିକର ସମାଧାନ ଦିଗରେ ପରୀକ୍ଷା ଓ ବିଭିନ୍ନ ପ୍ରୟୋଗ ଚଳାଇବା ପାଇଁ ଶିକ୍ଷକମାନଙ୍କୁ ସେ ଉତ୍ସାହିତ କରିବେ । ଏହା ଫଳରେ ବିଭିନ୍ନ ବିଦ୍ୟାଳୟର ସ୍ଥାନୀୟ ସମସ୍ୟା ଓ ସମାଧାନର ପନ୍ଥା ସମ୍ପର୍କରେ ସେ ପ୍ରତ୍ୟକ୍ଷ ଜ୍ଞାନ ହାସଲ କରି ପାରିବେ । ଏ ଦିଗରେ ଶିକ୍ଷକ ମାନଙ୍କୁ ଉଚିତ ସାହାଯ୍ୟସହଯୋଗ କରିବା ପରିଦର୍ଶକ ମହୋଦୟଙ୍କର ମୁଖ୍ୟ କର୍ତ୍ତବ୍ୟ ।

ବିଦ୍ୟାଳୟ ସମୂହର ପରିଦର୍ଶକ, ଆଧୁନିକ ଶିକ୍ଷା ଜଗତରେ ଚାଲିଥିବା ବିଭିନ୍ନ ପରୀକ୍ଷା ଓ ପରିବର୍ତ୍ତନ ସହିତ ନିଜକୁ ସତତ ସମ୍ପୃକ୍ତ ରଖିବା ବିଧେୟ । ସେ ଗଠନ ମୂଳକ ମନୋବୃତ୍ତି ଧରି ବିଦ୍ୟାଳୟ ଗୁଡ଼ିକୁ ସୁଧାରିବା ଉଦ୍ଦେଶ୍ୟରେ ଆଗେଇ ଚାଲିବା ଉଚିତ । ଆଧୁନିକ ମନସ୍ତତ୍ତ୍ୱବିଦ୍‌ମାନଙ୍କର ନୂଆ ନୂଆ ଉଦ୍ଭାବନ ଗୁଡ଼ିକୁ ବିଦ୍ୟାଳୟରେ କାର୍ଯ୍ୟକାରୀ କରିବା ମଧ୍ୟ ତାଙ୍କ କର୍ତ୍ତବ୍ୟର ଅନ୍ତର୍ଗତ ।

କୌଣସି ଶିକ୍ଷକଙ୍କର ଦୋଷ ଦୁର୍ବଳତା ଦେଖିଲେ ପରିଦର୍ଶକ ବନ୍ଧୁ ଭାବରେ ସଦୁପଦେଶ ଦେବା ଉଚିତ । ଛାତ୍ର ବା ଶିକ୍ଷକ-ମାନଙ୍କ ସମ୍ମୁଖରେ କୌଣସି ଶିକ୍ଷକଙ୍କୁ ଅପମାନିତ କରାଯିବା ଅନୁଚିତ । ଏକାନ୍ତରେ ବିଭିନ୍ନ ଶିକ୍ଷକଙ୍କ କାର୍ଯ୍ୟକଳାପ ସମ୍ପର୍କରେ ସେ ବ୍ୟକ୍ତିଗତ ଆଲୋଚନା କରି ପାରନ୍ତି ବା ଶିକ୍ଷକମାନଙ୍କର ଏକ ବୈଠକ ଡକାଇ ତାଙ୍କ ନିଜର ପରାମର୍ଶ ଓ ମତାମତ ଦେଇପାରନ୍ତି ।

କୌଣସି ଶିକ୍ଷକଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ପୂର୍ବରୁ ସେ ବିଦ୍ୟାଳୟର ପ୍ରଧାନ ଶିକ୍ଷକଙ୍କ ପରାମର୍ଶ ଗ୍ରହଣ କରିବା ଉଚିତ ।

ପରିଦର୍ଶକ ମହୋଦୟଙ୍କୁ ଶିକ୍ଷାଦାନ କୌଶଳ ଉତ୍ତମ ଭାବରେ ଜଣାଥିବା ଆବଶ୍ୟକ । କୌଣସି ଶିକ୍ଷକଙ୍କ ଶିକ୍ଷାଦାନ ପ୍ରଣାଳୀରେ ସନ୍ତୁଷ୍ଟ ନ ହେଲେ ସେ ନିଜେ ଶିକ୍ଷାଦାନ କରି ଦୃଷ୍ଟାନ୍ତ ଦ୍ୱାରା ଶିକ୍ଷକଙ୍କର ଦୋଷ ତ୍ରୁଟି ସୁଧାରିଦେବା ଉଚିତ । ବିଦ୍ୟାଳୟ ପରିଦର୍ଶନ ବେଳେ ବିଦ୍ୟାଳୟର ଖାତାପତ୍ର, ହିସାବକିତାବ, ବିଦ୍ୟାଳୟର ଶିକ୍ଷଣୀୟ ପରିସ୍ଥିତି, ଛାତ୍ରମାନଙ୍କର ଚାଲିଚଳନ ଓ ଆଚାର ବ୍ୟବହାର, ବିଦ୍ୟାଳୟ ଓ ଗ୍ରାମର ସମ୍ପର୍କ, ବିଦ୍ୟାଳୟର ବାହ୍ୟ କାର୍ଯ୍ୟକଳାପ ଇତ୍ୟାଦି ସମ୍ପର୍କରେ ତୀକ୍ଷ୍ଣ ଦୃଷ୍ଟି ଦିଆଯିବା ଉଚିତ । ଆଜିମଧ୍ୟ ପ୍ରତ୍ୟେକ ଶିକ୍ଷକ ଓ ଛାତ୍ର ଆବଶ୍ୟକ ଖାତାପତ୍ର ପୂରଣ କରୁଛନ୍ତି କି ନାହିଁ ସେଥିପ୍ରତି ସେ ମହାଶୟେ ଯଥାଯଥ ଗୁରୁତ୍ୱ ଦେବା ଆବଶ୍ୟକ ।

ଜଣେ ପରିଦର୍ଶକଙ୍କ ଦାୟିତ୍ୱରେ ବହୁତ ସଂଖ୍ୟକ ବିଦ୍ୟାଳୟ ରହିବା ଠିକ୍ ନୁହେଁ । ପ୍ରତ୍ୟେକ ବିଦ୍ୟାଳୟକୁ ବର୍ଷ ମଧ୍ୟରେ ଯେପରି ଅନ୍ୟୂନ ଦୁଇଥର ପରିଦର୍ଶନ କରିହେବ, ସେହି ଦୃଷ୍ଟିରୁ ପରିଦର୍ଶନ ଅଞ୍ଚଳ ନିର୍ଦ୍ଦିଷ୍ଟ ହେବ ଉଚିତ । ପ୍ରତ୍ୟେକ ବିଦ୍ୟାଳୟରେ ପରିଦର୍ଶକ ମହୋଦୟ ଗୋଟିଏ ପୂରା ଦିନ କଟାଇବେ । ସେ ଛାତ୍ରମାନଙ୍କର ସଫାଇ, କୃଷି, ସୂତାକଟା ଓ ଅନ୍ୟାନ୍ୟ କାର୍ଯ୍ୟରେ ପୂରା ଅଂଶ ଗ୍ରହଣ କରିବେ । ସମ୍ଭବ ହେଲେ ଗ୍ରାମ ଓ ବିଦ୍ୟାଳୟର ସମ୍ପର୍କକୁ ଦୃଢ଼ କରିବା ଦିଗରେ ସେ କିଛି ଉଦ୍ୟମ କରିବେ । ସମସ୍ତ କାର୍ଯ୍ୟରେ ଉତ୍ସାହର ସହିତ ଭାଗ ନେବା ଦ୍ୱାରା ଶିକ୍ଷକ ତଥା ଛାତ୍ରମାନେ ବିଶେଷ ଅନୁପ୍ରାଣିତ ହେବେ । ବିଦ୍ୟାଳୟର ଉନ୍ନତି ଦିଗରେ ସେ କେତେକ

ବାସ୍ତବ ଓ କାର୍ଯ୍ୟକାରୀ ଯୋଜନା ବାଢ଼ି ସେ ସମ୍ପର୍କରେ ସେ ଗୁରୁଜୀମାନଙ୍କ ବୈଠକରେ ଆଲୋଚନା କରିପାରନ୍ତି । ଏହା ଫଳରେ ବିଦ୍ୟାଳୟରେ ନୂଆ ନୂଆ ଯୋଜନା ଉତ୍ପାଦନ ସହିତ କାର୍ଯ୍ୟକାରୀ କରାଯାଇ ପାରିବ ।

ପରିଦର୍ଶନ-ସମୟରେ ନିମ୍ନଲିଖିତ ଦଶଟି ବିଷୟ ପ୍ରତି ବିଶେଷ ଦୃଷ୍ଟି ଦେବାକୁ ହେବ ।

୧ । ବିଦ୍ୟାଳୟର ଅବସ୍ଥିତି ଓ ସାଧାରଣ ଅବସ୍ଥା ।

୨ । ସଫାଇ ଓ ସ୍ୱାସ୍ଥ୍ୟ ।

୩ । ବିଦ୍ୟାଳୟରେ କରାଯାଉଥିବା ବିଭିନ୍ନ ସୃଜନାତ୍ମକ କାର୍ଯ୍ୟକଳାପ-ଉତ୍ପାଦନ-ପରିମାଣ ଓ ଆୟବ୍ୟୟର ହିସାବ ।

୪ । ସ୍ୱାବଲମ୍ବନ ହାସଲ ଦିଗରେ ବିଦ୍ୟାଳୟର ଅଗ୍ରଗତି ।

୫ । ବିଦ୍ୟାଳୟର ମଣ୍ଡନ ଓ ସାଜସଜ୍ଜା—ଛବି, ଚାର୍ଟ, ପୋଷ୍ଟର ଇତ୍ୟାଦି ।

୬ । ବିଦ୍ୟାଳୟରେ ଖେଳ କୌତୁକ ଓ ମନୋରଂଜନ ବ୍ୟବସ୍ଥା ।

୭ । ବିଭିନ୍ନ ଶିକ୍ଷାଦାନ ଉପକରଣ ଓ ସେ ସବୁର ବ୍ୟବହାର ।

୮ । ବିଦ୍ୟାଳୟର ବଗିଚା ଓ କାର୍ଯ୍ୟାଳୟ ( Wrok-shop )— କାର୍ଯ୍ୟ-ପ୍ରକ୍ରିୟାର ଶିକ୍ଷଣୀୟ ମୂଲ୍ୟ ଓ ଶିକ୍ଷାଦାନ କାର୍ଯ୍ୟରେ ତାହାର ଯଥାଯଥ ପ୍ରୟୋଗ ।

୯ । ବିଦ୍ୟାଳୟର ସାଧାରଣ ଜୀବନ—ଛାତ୍ରମାନେ ସ୍ୱାଧୀନ ଓ ସରସ ଜୀବନ ଯାପନ କରନ୍ତି କି ନାହିଁ ସେଥିପ୍ରତି ଦୃଷ୍ଟି ଦେବାକୁ ହେବ ।

୧୦ । ଛାତ୍ରମାନଙ୍କର ଆଚାର ବ୍ୟବହାର, ନମ୍ରତା ନିର୍ଭୀକତା ଓ ଆତ୍ମପ୍ରକାଶ ଶକ୍ତି ।

୧୧ । ଶିକ୍ଷକ ଓ ଅଭିଭାବକଙ୍କ ସମ୍ପର୍କ ।

୧୨ । ଗ୍ରାମ-ସଂଗଠନରେ ବିଦ୍ୟାଳୟର ନେତୃତ୍ୱ ।

୧୩ । ବିଦ୍ୟାଳୟର ସାଧାରଣ ଶାନ୍ତି ଶୃଙ୍ଖଳା ।

୧୪ । ପୁସ୍ତକାଳୟ ଓ ତାହାର ଯଥାଯଥ ବ୍ୟବହାର ।

୧୫ । ଶିକ୍ଷକମାନଙ୍କର ବାର୍ଷିକ, ମାସିକ ଓ ଦୈନିକ ପାଠ-ଯୋଜନା ।

୧୬ । ଛାତ୍ରମାନଙ୍କର ଖାତାପତ୍ର ।

୧୭ । ଛାତ୍ରାବାସର ସାଧାରଣ ଅବସ୍ଥା ଓ ଜୀବନ ଯାପନ ଢଙ୍ଗ ।

୧୮ । ବିଦ୍ୟାଳୟରେ ପାଠଚକ୍ର ( Study Circle ) ର ସୁବ୍ୟବସ୍ଥା ଓ ସୁପରିଚାଳନା ।

୧୯ । ବିଦ୍ୟାଳୟର ସାଂସ୍କୃତିକ ଜୀବନ—ପଠନାଳୟର ବ୍ୟବସ୍ଥା ।

୨୦ । ସଂଗ୍ରହାଳୟ—ଶିକ୍ଷା କ୍ଷେତ୍ରରେ ଏହାର ଉପଯୋଗ ।

୨୧ । ବିଦ୍ୟାଳୟର ଆୟବ୍ୟୟ ହିସାବ ।

୨୨ । ଛାତ୍ରମାନେ କରୁଥିବା ବାହ୍ୟ କର୍ମକଳାପ । (Out ward activities )



# ଗୃହ ଓ ବିଦ୍ୟାଳୟ

ଗୃହରେ ଶିଶୁ-ଜୀବନର ଭିତ୍ତିପତ୍ତନ ହୁଏ । ଗୃହର ସାହାଯ୍ୟ ସହଯୋଗ ବିନା ବିଦ୍ୟାଳୟ-ଜୀବନ କଦାପି ପୂର୍ଣ୍ଣତା ପ୍ରାପ୍ତ ହୋଇ ନପାରେ । ଜୀବନର ଭିତ୍ତିପତ୍ତନ ପାଇଁ ଗୃହ ଯେପରି ଦାୟୀ, ଏହାର ପରିପୂର୍ଣ୍ଣତା ପାଇଁ ବିଦ୍ୟାଳୟ ମଧ୍ୟ ସେହି ପରିମାଣରେ ଦାୟୀ । ଶିକ୍ଷକ ଓ ଅଭିଭାବକ, ହାତ ଧରାଧରି ହୋଇ ସମତାଳରେ ଗତି ନ କଲେ, ଶିଶୁର ସର୍ବାଙ୍ଗୀନ ବିକାଶ ପ୍ରତିହତ ହେବ—ଏଥିରେ ସନ୍ଦେହ ନାହିଁ ।

ଶିକ୍ଷକ ସୁବିଧା ଅନୁସାରେ ସପ୍ତାହରେ ଥରେ ବା ଦୁଇଥର ପ୍ରତି ଛାତ୍ରର ଘରକୁ ଯାଇ ତା'ର ବାପମା' ଓ ଅଭିଭାବକଙ୍କ ସହିତ ସମ୍ପର୍କ ସ୍ଥାପନ କରିବା ଉଚିତ । କୌଣସି ଛାତ୍ର ବେମାର ହେଲେ ତା'ର ରୋଗମୁକ୍ତି ଦିଗରେ ସେ ବାପମା'ଙ୍କୁ ଆବଶ୍ୟକ ପରାମର୍ଶ ଦେବେ । ଅନ୍ୟ ସମୟରେ ଗୃହର ପରିଷ୍କାର ପରିଚ୍ଛନ୍ନତା, ଖାଦ୍ୟ, ସ୍ୱାସ୍ଥ୍ୟ, ଫସଲ, ଦେଶର ଅବସ୍ଥା ଓ ସର୍ବୋପରି ଛାତ୍ରର ଭବିଷ୍ୟତ ଉନ୍ନତି ସମ୍ପର୍କରେ ଆଳାପ ଆଲୋଚନା କରାଯାଇ ପାରେ ।

ଗୃହ ଓ ବିଦ୍ୟାଳୟ ମଧ୍ୟରେ ଘନିଷ୍ଠ ସମ୍ପର୍କ ପ୍ରତିଷ୍ଠିତ ହେବା ବିଧେୟ । ଗୃହ ଓ ବିଦ୍ୟାଳୟ ପରସ୍ପରର ଯେତିକି ନିକଟରୁ

ନାଗରିକରେ ହୋଇ ପାରିବେ, ଦେଶ ଓ ଜାତି ପକ୍ଷରେ ତାହା ସେତିକି କଲ୍ୟାଣକର ହେବ । ବିଦ୍ୟାଳୟରେ ବାପମା' ଓ ଘରେ ଶିକ୍ଷକଙ୍କର ସମ୍ମାନ ସୁରକ୍ଷିତ ହେବା ଉଚିତ । ପ୍ରତ୍ୟେକର ସୁଖ ଦୁଃଖରେ ସମଭାଗୀ ହୋଇପାରିଲେ ଗ୍ରାମରେ ଏକ ସୁସ୍ଥ ପରିସ୍ଥିତି ସୃଷ୍ଟି ହେବା ସଙ୍ଗେ ସଙ୍ଗେ ଛାତ୍ରର ମଧ୍ୟ ସର୍ବବିଧ ମଙ୍ଗଳ ସାଧିତ ହୋଇ ପାରିବ ।

ଶିକ୍ଷକ ଓ ଅଭିଭାବକଙ୍କ ମଧ୍ୟରେ ଆନ୍ତର ଓ ବନ୍ଧୁତ୍ୱଗତ ସାମଞ୍ଜସ୍ୟ ପ୍ରତିଷ୍ଠିତ ହେବା ସବୁଠାରୁ ବଡ଼ ଗୁରୁତ୍ୱପୂର୍ଣ୍ଣ ବିଷୟ । ଗୃହ ଓ ବିଦ୍ୟାଳୟର ଶିକ୍ଷାଧାରା ଓ ଜୀବନ ଧାରଣ ପଦ୍ଧତିରେ ସମତା ସମ୍ଭବ ନ ହେଲେ, ଛାତ୍ରର ବ୍ୟକ୍ତିତ୍ୱ-ବିକାଶରେ ଅଖଣ୍ଡତା ସୃଷ୍ଟି ହୋଇ ପାରିବ ନାହିଁ । ଏହି କାରଣରୁହିଁ ଆଜିକାଲି ଶିକ୍ଷିତ ସମାଜରେ ଅଖଣ୍ଡ ବ୍ୟକ୍ତିତ୍ୱ (Integrity in Personality) ର ଦୃଷ୍ଟାନ୍ତ କ୍ୱଚିତ୍ ମିଳୁଛି । ବିଦ୍ୟାଳୟ ଓ ଗୃହ ଜୀବନର ଦୃଷ୍ଟି କୋଣରେ ଅମେଳ ଥିବାରୁ ଛାତ୍ରର ବ୍ୟକ୍ତିତ୍ୱ ଦ୍ୱିଧା-ବିଭକ୍ତ ଓ ଖଣ୍ଡ ଖଣ୍ଡ ହୋଇ ଯାଉଛି । ବିଦ୍ୟାଳୟରେ ପଠିତ ମତ ଗୃହରେ କାର୍ଯ୍ୟକାରୀ ହେଉ-ଥିବାର ସେ ଦେଖି ପାରୁନାହିଁ । ବରଂ ଅନ୍ୟ ପକ୍ଷରେ ଯାହା ଖରାପ ଓ ବର୍ଜନୀୟ ବୋଲି ଛାତ୍ର ବିଦ୍ୟାଳୟରେ ଶିକ୍ଷାଲାଭ କରୁଛି, ଠିକ୍ ତାହାହିଁ ଘରେ ଓ ସାମାଜିକ ଜୀବନରେ ଅକ୍ଷରେ ଅକ୍ଷରେ କାର୍ଯ୍ୟକାରୀ ହେଉଥିବାର ସେ ଦେଖୁଛି । ସଫାଇ ଓ ସ୍ୱାସ୍ଥ୍ୟ ଆଦିର ନିୟମ ଘରେ ଅନୁସୃତ ହେଉନାହିଁ । ପୁସ୍ତକରୁ "ସତ୍ୟର ଜୟ ଓ ପାପର କ୍ଷୟ' ବୋଲି ଶିଖୁଥିଲେ ମଧ୍ୟ ବାସ୍ତବ ଜୀବନରେ ଅନେକ କ୍ଷେତ୍ରରେ ଅସତ୍ୟର ଜୟ ହେଉଥିବାର ସେ ଦେଖୁଛି । ମିଥ୍ୟା, ପ୍ରତାରଣା, ପ୍ରବଞ୍ଚନା ଓ ପାପାଚାର ସାମାଜିକ ଜୀବନକୁ ଆଚ୍ଛନ୍ନ କରି ରଖିଛି ତେଣୁ ବିଦ୍ୟାଳୟର ସମସ୍ତ ଶିକ୍ଷା ବ୍ୟର୍ଥ ହୋଇ

ଯାଉଛନ୍ତି । ବିଦ୍ୟାଳୟ ଓ ସମାଜର ଜୀବନରେ ସମତା ସୃଷ୍ଟି ନ ହେଲେ ଏହାର ପ୍ରତିକାର ସମ୍ଭବ ନୁହେଁ ।

ଆଜିକାଲିର ଶିକ୍ଷା ପଦ୍ଧତି ଜୀବନଠାରୁ ବିଚ୍ଛିନ୍ନ ହୋଇ ଯାଇଛି । ଶିକ୍ଷା ଶିକ୍ଷା ବାଟରେ ଓ ଜୀବନ ଜୀବନ ବାଟରେ ଆଗେଇ ଚାଲିଛନ୍ତି । ଶିକ୍ଷାନୀତି ସବୁ ଆଜି ବିଦ୍ୟାଳୟ-ଜୀବନରେ ମଧ୍ୟ କୌଣସି ପ୍ରଭାବ ପକାଇ ପାରୁନାହିଁ । ଗୁରୁଜୀମାନେ-ବହୁ ସମୟରେ ମିଥ୍ୟାର ଆଶ୍ରୟ ନେଉଥିବାର ଛାତ୍ର ସ୍ୱଚକ୍ଷୁରେ ଦେଖୁଛନ୍ତି । ଆଜି ମଧ୍ୟ ସେମାନେ ପାନ, ବିଡ଼ି, ଗୁଡ଼ାଖୁ ଆଦି ମାଦକଦ୍ରବ୍ୟ ନିଜେ ବ୍ୟବହାରକରି, ସେସବୁ ବ୍ୟବହାର-ନକରିବା ପାଇଁ ଛାତ୍ରମାନଙ୍କୁ ଶିକ୍ଷା ଦେଉଛନ୍ତି । ଏହିସବୁ କାରଣରୁ ଶିକ୍ଷା ଜୀବନ ପାଇଁ ନହୋଇ କେବଳ ଶିକ୍ଷାରେହିଁ ସଂପୂର୍ଣ୍ଣ ହୋଇ ଯାଉଛି । କିନ୍ତୁ ଯେଉଁ ଶିକ୍ଷା ଜୀବନରେ କାର୍ଯ୍ୟକାରୀ ନହୁଏ, ତାହା ଅସଂପୂର୍ଣ୍ଣ ଓ ଅଶିକ୍ଷା । ବାସ୍ତବିକ୍ ଯେଉଁଦିନ ପୁସ୍ତକର ନୀତି ସବୁ ବିଦ୍ୟାଳୟ ଓ ଗୃହ-ଜୀବନରେ କାର୍ଯ୍ୟକାରୀ ହେଉଥିବାର ଛାତ୍ର ଦେଖି ପାରିବ, ସେହିଦିନ ଠାରୁ ସେସବୁ ତା' ଜୀବନକୁ ସ୍ପର୍ଶ କରିବ ଓ ଅଳ୍ପେ ଅଳ୍ପେ ତା' ଜୀବନରେ ଅଙ୍ଗୀଭୂତ ହୋଇଯିବ ।

ପାରିବାରିକ ଜୀବନରେ ବିଭେଦ ଓ ମତାନୈକ୍ୟର ପ୍ରଭାବ ଶିଶୁ-ଜୀବନରେ ମଧ୍ୟ କମ୍ ନୁହେଁ । ଘରେ ବାପମା' ଓ ଅନ୍ୟମାନେ ଯଦି ଗୋଟିଏ ନୀତିକୁ ଅନୁସରଣ କରି ଚାଲନ୍ତି, ତା' ହେଲେ ତାହାର ବ୍ୟକ୍ତିତ୍ୱ-ବିକାଶରେ କୌଣସି ଅନ୍ତରାୟ ଜାତ ହୁଏ ନାହିଁ । କିନ୍ତୁ ଅନ୍ୟ ପକ୍ଷରେ ଯଦି ବାପମା'ଙ୍କ ମଧ୍ୟରେ କୌଣସି ବିଷୟରେ ମତାନ୍ତର ଓ ସେଥିରୁ ମନାନ୍ତର ସୃଷ୍ଟିହୁଏ, ତା'ହେଲେ ଶିଶୁର ବ୍ୟକ୍ତିତ୍ୱ ବିକାଶ ବାଧାପ୍ରାପ୍ତ ହୁଏ । କେଉଁଟା କରଣୀୟ ଓ କ'ଣ ବର୍ଜନୀୟ,ତାହା ସେ ଜାଣିପାରେ ନାହିଁ । ଏ ଦୃଷ୍ଟିରୁ ବାପମା'

ସନ୍ତାନ ସନ୍ତତିଙ୍କ ସମ୍ମୁଖରେ ନିଜ ନିଜ ମଧ୍ୟରେଥିବା ମତାନୈକ୍ୟର ପରିଚୟ ଦେବା ଆଦୌ ଉଚିତ ନୁହେଁ ।

ତେଣୁ ଗୃହ ଓ ବିଦ୍ୟାଳୟ ଶିଶୁର ସର୍ବାଙ୍ଗୀନ ବିକାଶରେ ଦାୟିତ୍ୱ ମିଳିମିଶି ବହନ କରିବା ଉଚିତ । ଆଜିକାଲି ଗୃହ ଶିଶୁର ଶାରୀରିକ ବିକାଶ ଓ ବିଦ୍ୟାଳୟ ମାନସିକ ବିକାଶର ଦାୟିତ୍ୱ ବହନ କରୁଛନ୍ତି । କିନ୍ତୁ ଏହି ପନ୍ଥା ଦ୍ୱାରା ଶିଶୁର ସର୍ବାଙ୍ଗୀନ ବିକାଶ ଆଦୌ ସମ୍ଭବ ନୁହେଁ । ବିଦ୍ୟାଳୟ ଗୃହ ଓ ଗୃହ ବିଦ୍ୟାଳୟର ଦାୟିତ୍ୱ ବହନ କରିବା ଉଚିତ । ଶିଶୁ ପକ୍ଷରେ ଗୃହ ଓ ବିଦ୍ୟାଳୟ ମଧ୍ୟରେ ବିଶେଷ କୌଣସି ପାର୍ଥକ୍ୟ ରହିବା ଅନୁଚିତ । ଉଭୟ ଉଭୟର ପରିପୂରକ ଭାବରେ କାମକରିବା ଉଚିତ । ଉଭୟ ଅନୁଷ୍ଠାନ ଶିଶୁର ଶାରୀରିକ,ମାନସିକ ତଥା ନୈତିକ ବିକାଶର ପୂର୍ଣ୍ଣ ଦାୟିତ୍ୱ ବହନକଲେ ଅଚିରେ ଶିଶୁସମାଜ ଅଖଣ୍ଡ ବ୍ୟକ୍ତିତ୍ୱର ଅଧିକାରୀ ହୋଇ ପାରିବ ।

ଶିକ୍ଷକମାନେ ଗ୍ରାମବାସୀ ଓ ଅଭିଭାବକମାନଙ୍କର ସୁଖ ଦୁଃଖରେ ସମଭାଗୀ ହେବେ ବୋଲି ଅନେକ କୁହାଯାଇଛି । କିନ୍ତୁ ଆଜିକାଲି ସର୍ବତ୍ର ଦେଖାଯାଉଛି ଯେ, ଶିକ୍ଷକମାନେ ଗ୍ରାମବାସୀଙ୍କର ଦୁଃଖର ବନ୍ଧୁ ନହୋଇ କେବଳ ସୁଖର ସାଥୀ ହେଉଛନ୍ତି । ଗାଁରେ ହଇଜା, ବସନ୍ତ ଆଦି ସଂକ୍ରାମକ ରୋଗ ବ୍ୟାପିଲେ ଶିକ୍ଷକ ଗ୍ରାମବାସୀ ମାନଙ୍କୁ ସ୍ୱାସ୍ଥ୍ୟରକ୍ଷାର ନିୟମ ଓ ଉପାୟ ଶିକ୍ଷା ନ ଦେଇ ବିଦ୍ୟାଳୟ ବନ୍ଦ କରି ଦେଉଛନ୍ତି; କିନ୍ତୁ ଏହା ଶିକ୍ଷକଙ୍କର ସହାନୁଭୂତି ବା ଗ୍ରାମ-ସେବା ମନୋବୃତ୍ତିର ପରିଚାୟକ ନୁହେଁ । ସମୂହ ବିପତ୍ତିବେଳେହିଁ ଶିକ୍ଷକ ସମସ୍ତ ଗ୍ରାମର ଶିକ୍ଷାଦାୟିତ୍ୱ ବହନ କରିବା ପାଇଁ ଆଗଭର ହୋଇ ବାହାରିବା ଉଚିତ । ଆଜିମଧ୍ୟ ଏହି ସମୟରେ ଛାତ୍ରମାନେ ବାସ୍ତବ କାର୍ଯ୍ୟ କରିଆରେ ଯେଉଁ ଶିକ୍ଷା ଲାଭ କରିବେ, ତାହାକୁ

ସେମାନେ ଅନ୍ନ ଜୀବନସାଗ୍ର ପାଶୋରିବେ ନାହିଁ । ଗ୍ରାମବାସୀଙ୍କ ଶିକ୍ଷା ଉଦ୍ଦେଶ୍ୟରେ ଛାତ୍ରମାନେ ବିଭିନ୍ନ ପ୍ରକାର ସ୍ୱାସ୍ଥ୍ୟଚାର୍ଟ, ଛବି, ପୋଷ୍ଟର, ବିଜ୍ଞାପନ, ପ୍ରଚାର-ପତ୍ର ଆଦି ନେଇ ରୋଗ ବିରୋଧରେ ଗାଁରେ ବିରାଟ ଅଭିଯାନ ଚଳାଇବା ଉଚିତ ।

ପ୍ରତ୍ୟେକ ବିଦ୍ୟାଳୟରେ "ଅଭିଭାବକ-ସଂଗଠନ" ଗଢ଼ାଯିବା ଉଚିତ । ଏହି ସଂଗଠନ ବିଦ୍ୟାଳୟର ବାହ୍ୟ ପରିଚାଳନା ଦାୟିତ୍ୱ ବହନ କରିବ । ବିଦ୍ୟାଳୟର ଦୈନନ୍ଦିନ ପରିଚାଳନା-ଦାୟିତ୍ୱ ବହନ କରିବା ପାଇଁ ଅଭିଭାବକମାନଙ୍କ ମଧ୍ୟରୁ ନିର୍ବାଚନ-ସୂତ୍ରରେ ଗୋଟିଏ ପରିଚାଳନା-ସମିତି ଗଢାଯିବ । ସେଥିରେ ଜଣେ ସଭାପତି ବଛାଯିବେ । ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଓ ଅନ୍ୟ ଜଣେ ଶିକ୍ଷକ-ପ୍ରତିନିଧି ଏହି ପରିଚାଳନା-ସମିତିରେ ସଭ୍ୟ ରହିବେ । ପ୍ରଧାନ-ଶିକ୍ଷକ ଏହି ସମିତିର ଆବାହକ ଓ ସଂପାଦକ ଦାୟିତ୍ୱ ତୁଲାଇବେ । ଅତି ଗୁରୁତ୍ୱପୂର୍ଣ୍ଣ ବିଷୟର ବିଚାର ପାଇଁ ଅଭିଭାବକ-ସଂଗଠନର ବୈଠକ ଡକାଯିବ । ଏହି ସଂଗଠନର ବୈଠକ ପ୍ରତି ତିନି ମାସରେ ଅନ୍ୟୂନ ଥରେ ଅନୁଷ୍ଠିତ ହେବା ଉଚିତ ।

ପ୍ରତ୍ୟେକ ରାଜ୍ୟରେ ଶିକ୍ଷାବିଭାଗ ତରଫରୁ ଜନତା ମହାବିଦ୍ୟାଳୟ ସବୁ ପ୍ରତିଷ୍ଠିତ ହେବା ଉଚିତ । ଦେଶର ନାଗରିକ ମାନଙ୍କୁ ଅନ୍ୟାନ୍ୟ ଆବଶ୍ୟକ ଶିକ୍ଷା ଦେବା ସଙ୍ଗେ ସଙ୍ଗେ ଶିଶୁ ପାଳନ-ବିଜ୍ଞାନ ସମ୍ପର୍କରେ ଏହି ମହାବିଦ୍ୟାଳୟରେ, ସେମାନଙ୍କୁ ସ୍ୱତନ୍ତ୍ର ଶିକ୍ଷା ଦେବାର ଅନୁକୂଳ ବ୍ୟବସ୍ଥା ଗ୍ରହଣ କରାଯିବ । ବାପ ମା'ମାନଙ୍କୁ ଶିଶୁପାଳନର କଳା ଓ ବିଜ୍ଞାନ ସମ୍ପର୍କରେ ଶିକ୍ଷା ଦେବା ପାଇଁ ସରକାରଙ୍କ ତରଫରୁ ଡାକ୍ତର, ଶିକ୍ଷାବିତ୍, ମନସ୍ତତ୍ତ୍ୱବିତ୍ ଓ ଅନ୍ୟାନ୍ୟ ବିଶେଷଜ୍ଞମାନେ ନିଯୁକ୍ତ ହେବେ । ସେମାନେ ମଝିରେ ମଝିରେ କଲେଜକୁ ଆସି ବାପମା'ମାନଙ୍କ ସହିତ ଏ

ସମ୍ପର୍କରେ ଆଳାପ ଆଲୋଚନା କରିବେ ଓ ଆବଶ୍ୟକ ପରାମର୍ଶ ଦେବେ ।

ସମାଜ ଓ ଜାତିକୁ ବଦଳାଇବା ପାଇଁ ଶିକ୍ଷା ପଦ୍ଧତି ହିଁ ଏକମାତ୍ର ଅମୋଘ ଅସ୍ତ୍ର । ଶିକ୍ଷା କଳ୍ପନାରେ ଯଦି ଘରେ ଘରେ ଶିଶୁପାଳନ ଓ ଶିକ୍ଷାର ଏକ ଅନୁକୂଳ ପରିସ୍ଥିତି ସୃଷ୍ଟି କରାଯାଇ ପାରେ, ତା' ହେଲେ ଖୁବ୍ ଅଳ୍ପ ସମୟ ମଧ୍ୟରେ ସମାଜର ଚେହେରା ବଦଳି ଯିବା ବ୍ୟକ୍ତିକୁ ନେଇକରିହିଁ ସମାଜ । ତେଣୁ ଶିକ୍ଷା ଜରିଆରେ ଆଦର୍ଶ ବ୍ୟକ୍ତି-ନିର୍ମାଣ ସମ୍ଭବ ହୋଇ ପାରିଲେ ଆପେ ଆପେ ପରୋକ୍ଷରେ ଆଦର୍ଶ ସମାଜ ଗଢ଼ି ଉଠିବ । ଏଥିପାଇଁ ଶିଶୁ ସମାଜର ଦାୟିତ୍ୱ ଯେଉଁ ମା'ବାପଙ୍କ ଉପରେ ନ୍ୟସ୍ତ, ସେମାନଙ୍କୁ ପ୍ରଥମେ ଉପଯୁକ୍ତ ଶିକ୍ଷା ଦେଇ ଆଦର୍ଶ ନାଗରିକ ରୂପେ ଗଠନ କରିବାର ସମସ୍ତ ଦାୟିତ୍ୱ ସମାଜ ସର୍ବାଗ୍ରେ ବହନ କରିବା ଉଚିତ । ଏଦିଗରେ କୌଣସି ଅବହେଳା ଆଦୌ ସ୍ପୃହଣୀୟ ନୁହେଁ ।

———

# ଆବଶ୍ୟକ ଖାତାପତ୍ର

୧ । ବିଦ୍ୟାଳୟ-ପ୍ରବେଶ ବିବରଣୀ ( Admission Reister ) ଛାତ୍ରର ପ୍ରବେଶ-ତାରିଖ, କ୍ରମିକ ସଂଖ୍ୟା, ବୟସ, ଜନ୍ମ-ତାରିଖ, ଛାତ୍ରର ନାମ, ବାପର ନାମ, ବୃତ୍ତି ବା ବ୍ୟବସାୟ, ସ୍ଥାୟୀ ଠିକଣା ଓ ପ୍ରବେଶ କରୁଥିବା ଶ୍ରେଣୀ ଏଥିରେ ଉଲ୍ଲେଖ ରହିବ । ଯେଉଁ ଶ୍ରେଣୀରେ ଛାତ୍ର ପ୍ରବେଶ କରିବାକୁ ହକ୍‌ଦାର, ତା'ଠାରୁ ଉଚ୍ଚ ଶ୍ରେଣୀରେ ତାକୁ ଭର୍ତ୍ତିକରିବା ଅନୁଚିତ । ବିଦ୍ୟାଳୟରେ ଛାତ୍ର ପ୍ରବେଶ କରିବା ପୂର୍ବରୁ ତା'ର ସାର୍ଟିଫିକେଟ୍ ତନଖି କରି ଦେଖିବାକୁ ହେବ ।

୨ । ବିଦ୍ୟାଳୟ-ପରିତ୍ୟାଗ ବିବରଣୀ (Withdrawal Register) ଏଥିରେ ଛାତ୍ରର ନାମ, ଶ୍ରେଣୀ, ବିଦ୍ୟାଳୟ ପରିତ୍ୟାଗର କାରଣ, ତାରିଖ, କୃତିତ୍ୱ, ବୟସ, ସ୍ୱଭାବ ଓ ଅଭିଭାବକଙ୍କର ସ୍ୱାକ୍ଷର ଆଦି ଉଲ୍ଲେଖ ରହିବ । ଛାତ୍ରର ଜନ୍ମ-ତାରିଖ ଓ ବୟସ ଉଲ୍ଲେଖ କରିବାରେ ଯେପରି କୌଣସି ଭୁଲ୍ ନ ହୁଏ, ସେଥିପ୍ରତି ବିଶେଷ ଧ୍ୟାନ ଦେବାକୁ ହେବ ।

୩ । ବ୍ୟୟ-ବିବରଣ ( Contingencies Register ) ବିଦ୍ୟାଳୟର ସାଧାରଣ ବ୍ୟୟ ଦୁଇ ଭାଗରେ ବିଭକ୍ତ—ଗୋଟିଏ

ପୌନଃପୌନିକ ଓ ଅନ୍ୟଟି ଅପୌନଃପୌନିକ । ଯେଉଁ ବ୍ୟୟ ସ୍ଥାୟୀ ଓ ପ୍ରାୟ ପ୍ରତ୍ୟେକ ବର୍ଷ କରିବାକୁ ପଡ଼େ, ତାହାକୁ ଚଳନ୍ତି ବା ପୌନଃପୌନିକ ବ୍ୟୟ କହନ୍ତି । କିନ୍ତୁ ଗୃହ ନିର୍ମାଣ, କୂପ ବା ପୋଖରୀ ଖୋଳାଇବା ଇତ୍ୟାଦି ଅସ୍ଥାୟୀ ବା ଅପୌନଃପୌନିକ ବ୍ୟୟ । ପ୍ରତ୍ୟେକ ବ୍ୟୟର ସ୍ୱୀକୃତ ରସିଦ (Voucher) ରଖିବାକୁ ହେବ । ସାଧାରଣ ବ୍ୟୟ-ବିବରଣୀରେ ନିମ୍ନଲିଖିତ ସ୍ତମ୍ଭ ଗୁଡ଼ିକ ପୂରଣ କରାଯିବ ଯଥା—(୧) କ୍ରୟ ତାରିଖ (୨) ଭାଉଚର ସଂଖ୍ୟା (୩) ବ୍ୟୟର ବିବରଣ (୪)ସଂଖ୍ୟା ବା ପରିମାଣ (୫) ପ୍ରତ୍ୟେକର ମୂଲ୍ୟ (୬) ମୋଟ୍ ମୂଲ୍ୟ (୭) ମନ୍ତବ୍ୟ । ଭାଉଚର ଉପରେ ଅନୁଷ୍ଠାନର ମୁଖ୍ୟ ନିଜେ ଖର୍ଚ୍ଚ କରିଛନ୍ତି ବୋଲି ସ୍ୱୀକୃତ ଦେବେ । ବିଭିନ୍ନ ବାବଦରେ ଖର୍ଚ୍ଚର ଅଲଗା ଅଲଗା ହିସାବ ଅଲଗା ଅଲଗା ସ୍ତମ୍ଭରେ ଉଲ୍ଲେଖ ରହିଥିବ ଓ ମାସକୁ ମାସ ମୋଟ୍ ହୋଇ ହୋଇ ଯାଉଥିବ ।

୪ । ଜମାଖର୍ଚ୍ଚ ବହି (Cash Book) ପ୍ରତ୍ୟେକ ଦିନର ଜମା ଓ ଖର୍ଚ୍ଚର ମୋଟ ହିସାବ ଏଥିରେ ଉଲ୍ଲେଖ କରାଯିବ । ଜମା ପାଇଁ ନିର୍ଦ୍ଦିଷ୍ଟ ସ୍ତମ୍ଭରେ ସରକାରୀ ସାହାଯ୍ୟ, ଦାନ, ଚାନ୍ଦା, ଛାତ୍ରଦତ୍ତ ବେତନ ( Fees), ବୃତ୍ତି ଟଙ୍କା, ଜୋରିମାନା ଇତ୍ୟାଦିର ହିସାବ ରଖାଯିବ । ସେହିପରି 'ବ୍ୟୟ-ସ୍ତମ୍ଭ'ରେ ଶିକ୍ଷକମାନଙ୍କର ବେତନ, ଉପକରଣ ଖର୍ଚ୍ଚ, ମରାମତି, ଗୃହ-ନିର୍ମାଣ ଇତ୍ୟାଦିର ଦୈନନ୍ଦିନ ହିସାବ ରଖାଯିବ । ପ୍ରତ୍ୟେକ ଦିନ ମୋଟ ଜମାରୁ ମୋଟ ଖର୍ଚ୍ଚ ବାଦ ଯାଇ ମହଯୁଦ୍ ବାଣ୍ଟି୍ରୁ (Balance ) ହିସାବ ରଖାଯିବ ଓ ସେଥିପାଇଁ ସ୍ୱତନ୍ତ୍ର ସ୍ତମ୍ଭ ରହିବ । ଏହାଦ୍ୱାରା ହିସାବ ଗଣ୍ଡଗୋଳର ବିଶେଷ ଆଶଙ୍କା ନ ଥାଏ ।

୫ । ସ୍ଥାୟୀ ଉପକରଣ ବିବରଣୀ (Stock-Register) ବିଦ୍ୟାଳୟର ସମସ୍ତ ସ୍ଥାୟୀ ଉପକରଣର ବିବରଣ ଏଥିରେ ଲିଖିତ ହୋଇ ରହିବ । ଏଥିରେ (୧) କ୍ରମିକ ସଂଖ୍ୟା (୨) ଜିନିଷର ନାମ (୩) କ୍ରୟତାରିଖ (୪) ମୂଲ୍ୟ (୫) ସଂଖ୍ୟା (୬) ଭଙ୍ଗରେ ସଂଖ୍ୟା (୭) ସ୍ୱାକ୍ଷର (୮) ମନ୍ତବ୍ୟ ଆଦି ସ୍ତମ୍ଭ ସ୍ଥାନ ପାଇବ । ଏହି ବିବରଣୀଭୁକ୍ତ କୌଣସି ଜିନିଷ ବିଭାଗୀୟ ଅନୁମତି ବିନା କାଟି ଦିଆଯାଇ ପାରିବ ନାହିଁ । ବର୍ଷକେ ଥରେ ଲେଖାଏ ସ୍ଥାୟୀ ଉପକରଣ ଗୁଡ଼ିକ ପ୍ରଧାନ ଶିକ୍ଷକଙ୍କ ଦ୍ୱାରା ଯାଞ୍ଚ କରାଯିବା ଉଚିତ ।

୬ । ସ୍ୱାବଲମ୍ବନ ବିବରଣୀ—ମୌଳିକ ବିଦ୍ୟାଳୟରେ ଗୁରୁଜୀମାନଙ୍କ ଦରମା ବ୍ୟତୀତ ଛାତ୍ରମାନଙ୍କ ସକାଶେ ସରକାର ଅନ୍ୟାନ୍ୟ ଯେଉଁ ଚଳନ୍ତି ଖର୍ଚ୍ଚ କରନ୍ତି, ସେମାନେ ସମ୍ପୂର୍ଣ୍ଣ ଭାବରେ ଶ୍ରମକରି ତାହା ବର୍ଷକୁ ବର୍ଷ ପରିଶୋଧ କରିବାକୁ ସମର୍ଥ ହେବା ଆବଶ୍ୟକ । ଏହି ଉଦ୍ଦେଶ୍ୟରେ ବିଦ୍ୟାଳୟରେ ଗୋଟିଏ ସ୍ୱାବଲମ୍ବନ -ବିବରଣୀ ରଖାଯିବ । ଏଥିରେ (୧) ବର୍ଷ (୨) ଶ୍ରେଣୀ (୩) କୃଷିରୁ ଆୟ, ବ୍ୟୟ ଓ ପାରିଶ୍ରମିକ (୪) ଧନ୍ଦାରେ ଆୟ, ବ୍ୟୟ ଓ ପାରିଶ୍ରମିକ (୫) ଅନ୍ୟାନ୍ୟ ଶିଳ୍ପକାର୍ଯ୍ୟରେ ଆୟ, ବ୍ୟୟ ଓ ପାରିଶ୍ରମିକ (୬) ମୋଟ ଆୟ, ବ୍ୟୟ ଓ ପାରିଶ୍ରମିକ (୭) ଛାତ୍ର ଛାତ୍ରୀ ସଂଖ୍ୟା (୮) ଜଣ ପ୍ରତି ପାରିଶ୍ରମିକ (୯) ହାରାହାରି ସ୍ୱାବଲମ୍ବନ (୧୦) ବିଦ୍ୟାଳୟର ମୋଟ ଆୟ-ପରିମାଣ ଓ ଶତକଡ଼ା ସ୍ୱାବଲମ୍ବନ (୧୧) ମନ୍ତବ୍ୟ ଆଦି ସ୍ତମ୍ଭ ସ୍ଥାନ ପାଇବ ।

୭ । ପରିସଂଖ୍ୟାନ ବିବରଣ (Statistical Register) ଏଥିରେ ଛାତ୍ରଦତ୍ତ ବେତନ, ଜୋରିମାନା ଇତ୍ୟାଦି ବିଦ୍ୟାଳୟର ବାର୍ଷିକ ଆୟ ଏବଂ ଶିକ୍ଷକଙ୍କ ଦରମା, ଉପକରଣ ଓ ପୁସ୍ତକ କ୍ରୟ ଆଦି ବ୍ୟୟର ମୋଟ ହିସାବ ରଖାଯିବ । ଏହି ବିବରଣୀ ଫଳରେ ବିଦ୍ୟାଳୟର ଆର୍ଥିକ ସ୍ଥିତି ସ୍ପଷ୍ଟ ଜଣା ପଡ଼ିଯାଏ ।

୮ । ଦରମା ପ୍ରାପ୍ତି ସ୍ୱୀକାର ବିବରଣୀ (Acquittance Roll) ଏଥିରେ ଶିକ୍ଷକଙ୍କ ନାମ, ଦରମାର ପରିମାଣ, ମାସରେ କରିଥିବା କାର୍ଯ୍ୟ ଦିବସ, ଦରମାରୁ କର୍ତ୍ତିତ ଅଂଶର ପରିମାଣ ଓ କାରଣ, ଶିକ୍ଷକଙ୍କ ସ୍ୱାକ୍ଷର ଓ ତାରିଖ ଆଦି ଉଲ୍ଲେଖ ରହିବ ।

୯ । **ପରିଦର୍ଶନ-ପୁସ୍ତକ** (Inspection Remarks) ଏଥିରେ କେବଳ ପରିଦର୍ଶନ-କର୍ମଚାରୀମାନଙ୍କ ମତାମତ ସ୍ଥାନ ପାଇବ । ଏହାର ନକଲ ବିଭାଗୀୟ ଉପରିସ୍ଥ କର୍ମଚାରୀଙ୍କ ନିକଟକୁ ପଠା ଯିବ ।

୧୦ । **ମତାମତ-ପୁସ୍ତକ** ( Visitors' Book ) ଅନ୍ୟ କୌଣସି ଜଣାଶୁଣା ବା ପ୍ରସିଦ୍ଧ ବ୍ୟକ୍ତି ଅନୁଷ୍ଠାନ ପରିଦର୍ଶନ କଲେ ଏଥିରେ ନିଜର ମତାମତ ଉଲ୍ଲେଖ କରି ପାରନ୍ତି ।

୧୧ । **ବିଦ୍ୟାଳୟ-ସମାଚାର** (Log-Book) ଏହି ବିବରଣୀରେ ବିଦ୍ୟାଳୟର ପ୍ରଧାନ ପ୍ରଧାନ ସମ୍ବାଦ ତାରିଖ ସହ ଉଲ୍ଲେଖ କରାଯିବ । କ୍ରମେ ଏହି ବିବରଣୀ ବିଦ୍ୟାଳୟର ଏକ ଇତିହାସ ଭଳି କାମଦେବ । ଶିକ୍ଷକମାନଙ୍କର ଯୋଗଦାନ, ପରିବର୍ତ୍ତନ, ଉପରିସ୍ଥ କର୍ମଚାରୀଙ୍କ ବିଦ୍ୟାଳୟ ପରିଦର୍ଶନ, ମୁଖ୍ୟ ମୁଖ୍ୟ ବ୍ୟକ୍ତିଙ୍କର ଆଗମନ, ସଭାସମିତି, ପର୍ବପର୍ବାଣି, ପୁରସ୍କାର-ବିତରଣ ଉତ୍ସବ ଓ ବିଦ୍ୟାଳୟ-ଜୀବନର ଅନ୍ୟାନ୍ୟ ଉଲ୍ଲେଖ ଯୋଗ୍ୟ ସମ୍ବାଦ ଏଥିରେ ଉଲ୍ଲେଖ କରାଯିବ ।

୧୨ । **ଗ୍ରାମ-ସମାଚାର**—ବିଦ୍ୟାଳୟ ସଂଲଗ୍ନ ଗ୍ରାମ ବା ଅଞ୍ଚଳର ପ୍ରଧାନ ପ୍ରଧାନ ସମ୍ବାଦ ତାରିଖ ସହିତ ଏହି ବିବରଣୀରେ ଉଲ୍ଲେଖ କରାଯିବ । ଏହି ବିବରଣୀ ନିଷ୍ଠାର ସହିତ ଯଥାମତ ପୂରଣ କରାଗଲେ ଏହା କ୍ରମେ ଏକ ଗ୍ରାମ-ଇତିହାସର ରୂପ ନେବ । ଗ୍ରାମବାସୀଙ୍କର ରାଜନୈତିକ, ଆର୍ଥିକ, ସାମାଜିକ ଓ ସାଂସ୍କୃତିକ ଜୀବନର ରୂପରେଖ ଏହି ବିବରଣୀରେ ସ୍ପଷ୍ଟ ହୋଇ ଉଠୁଥିବା ଉଚିତ ।

୧୩ । କୃଷି-ପଞ୍ଜିକା :—ବିଦ୍ୟାଳୟର ପ୍ରତ୍ୟେକ ଶ୍ରେଣୀର ଦାୟିତ୍ୱରେ କିଛି କିଛି ଜମି ଫସଲ ଉଦ୍ଦେଶ୍ୟରେ ଦିଆଯିବ । ଯେଉଁ ଶ୍ରେଣୀ ଯେଉଁ ଫସଲ ଉତାରିବ, ସେ ତାହାର ଠିକ୍ ନିଖ୍ ବିବରଣୀ ମଧ୍ୟ ରଖିବ । ଫସଲର ଇତିହାସ ଜାଣିବା ଓ ଛାତ୍ରମାନଙ୍କ ପର୍ଯ୍ୟବେକ୍ଷଣ ଶକ୍ତିର ବିକାଶ ସାଧନ କରିବା ଏହି ବିବରଣୀ-ଲେଖାର ମୁଖ୍ୟ ଲକ୍ଷ୍ୟ । ଏହି ପଞ୍ଜିକାରେ ନିମ୍ନ ସ୍ତମ୍ଭଗୁଡ଼ିକ ରଖାଯିବ

(କ) ତାରିଖ, (ଖ) କାର୍ଯ୍ୟର ନାମ (ଗ) ବ୍ୟୟିତ ସମୟ (ଘ) ଉଦ୍ଭିଦର କ୍ରମବିକାଶ । (ଙ) ଫସଲର ରୋଗ ଓ ପ୍ରତିକାର । (ଚ) ବିଭିନ୍ନ ବୈଜ୍ଞାନିକ ପରୀକ୍ଷା ଓ ଫଳାଫଳ, (ଛ) ଅଭାବ ଅସୁବିଧା (ଜ) ମତାମତ, (ଝ) ଫସଲରେ ବ୍ୟୟ (ଞ) ଫସଲରୁ ଆୟ ।

୧୪ । ଶିଶୁ-ପର୍ଯ୍ୟବେକ୍ଷଣ—ବିବରଣୀ—ଶିଶୁମାନେ ବିଦ୍ୟାଳୟରେ ନାମ ଲେଖାଇବାଠାରୁ ସେମାନଙ୍କର ବୃତ୍ତାନ୍ତ ବିବରଣୀ ଶ୍ରେଣୀ ଶିକ୍ଷକମାନେ ରଖିବେ । ଶିଶୁମାନଙ୍କର କ୍ରମବିକାଶ ଲିପିବଦ୍ଧ କରି ରଖିବା ଏହାର ମୁଖ୍ୟ ଉଦ୍ଦେଶ୍ୟ । ଛାତ୍ରମାନେ ଉପର ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେଲାବେଳେ ଏହି ବିବରଣୀ ମଧ୍ୟ ସେମାନଙ୍କ ସହିତ ହସ୍ତାନ୍ତରିତ ହେବ । ନୂଆ ଶିକ୍ଷକ କୌଣସି ଶ୍ରେଣୀରେ ନିଯୁକ୍ତ ହେଲେ ଏହି ବିବରଣୀ ପଢ଼ି ଛାତ୍ରମାନଙ୍କ ସ୍ୱଭାବ ସମ୍ପର୍କରେ ସ୍ପଷ୍ଟ ଧାରଣା ପାଇପାରିବ । ପ୍ରତ୍ୟେକ ଛାତ୍ରର ବିବରଣୀ ସ୍ୱତନ୍ତ୍ର ଭାବରେ ରଖାଯିବ ।

ଏହି ବିବରଣୀରେ ଛାତ୍ରର ନାମ, ମାସ, ଶାରୀରିକ ବିକାଶ, ମାନସିକ ବିକାଶ, ସ୍ୱଭାବ ଓ ଚରିତ୍ର, ପ୍ରିୟକାର୍ଯ୍ୟ ( Habby )ଅଭ୍ୟାସ ଓ ପ୍ରକୃତି ଆଦି ଲିପିବଦ୍ଧ ହୋଇ ରହିବ । ପ୍ରଥମରୁ ପ୍ରତି ତିନି ମାସରେ ଥରେ ଲେଖାଁଏ ଛାତ୍ରଙ୍କ ସମ୍ପର୍କରେ ଏହି ବିବରଣୀ ରଖାଯାଇପାରେ ।

୧୫ । ଗ୍ରାମ-ପର୍ଯ୍ୟବେକ୍ଷଣ ବିବରଣୀ—ଯେଉଁ ଗ୍ରାମରେ ଯେଉଁ ବିଦ୍ୟାଳୟ ଅବସ୍ଥିତ, ସେହି ବିଦ୍ୟାଳୟରେ ସେହି ଗ୍ରାମର ଗୋଟିଏ ପର୍ଯ୍ୟବେକ୍ଷଣ-ବିବରଣୀ ବର୍ଷକୁ ବର୍ଷ ସଂଗ୍ରହ କରାଯିବ । ଏଥିରେ ନିମ୍ନ ଲିଖିତ ବିଷୟ ଗୁଡ଼ିକ ସ୍ଥାନ ପାଇବ ।

(କ) ବର୍ଷ ଓ ମାସ, (ଖ) ଗ୍ରାମର ମାନଚିତ୍ର, (ଗ) ନାମକରଣ ଓ ସଂକ୍ଷିପ୍ତ ଇତିହାସ (ଘ) ଅବସ୍ଥିତି ଓ ପ୍ରାକୃତିକ ଅବସ୍ଥା, (ଙ) ଆର୍ଥିକ ପରିସ୍ଥିତି, (ଚ) ସାମାଜିକ ଅବସ୍ଥା (ଛ) ଶିକ୍ଷା (ଜ) ସ୍ୱାସ୍ଥ୍ୟ (ଝ) ସାଂସ୍କୃତିକ ଅବସ୍ଥା । (ଟ) ଶାସନଗତ ଅବସ୍ଥା (ଠ) ଗ୍ରାମ-ସଂଗଠନ ଓ ଉନ୍ନୟନ କାର୍ଯ୍ୟ (ଡ) ଉପସଂହାର ।

୧୬ । ମନ୍ତ୍ରିମଣ୍ଡଳ-ବିବରଣୀ—ବିଦ୍ୟାଳୟ ଜୀବନର ପରିଚାଳନା ଦାୟିତ୍ୱ ଛାତ୍ରସଭା ଦ୍ୱାରା ନିର୍ବାଚିତ ମନ୍ତ୍ରୀମାନେ ହିଁ ଗ୍ରହଣ କରିବେ । ଏହି ମନ୍ତ୍ରୀମଣ୍ଡଳର କାର୍ଯ୍ୟକାଳ ଏକ ମାସରୁ ତିନି ମାସ ପର୍ଯ୍ୟନ୍ତ ହୋଇପାରେ । ମନ୍ତ୍ରୀମାନେ ସେମାନଙ୍କ କାର୍ଯ୍ୟ-ଯୋଜନା ଛାତ୍ରସଭା ସମ୍ମୁଖରେ ପ୍ରଥମେ ଉପସ୍ଥାପିତ କରିବେ ଓ ତାହା ଆଲୋଚିତ ହେବ । ଅନ୍ୟାନ୍ୟ ଛାତ୍ରମାନେ ସେମାନଙ୍କ ସଂଶୋଧନ-ପ୍ରସ୍ତାବ ଏହି ସମୟରେ ଦାଖିଲ କରିବେ । କାର୍ଯ୍ୟକାଳ ସମାପ୍ତ ହେବା ପରେ ମନ୍ତ୍ରୀମଣ୍ଡଳ ସେମାନଙ୍କର ଏକ କାର୍ଯ୍ୟ-ବିବରଣ ଛାତ୍ରସଭା ସମ୍ମୁଖରେ ଦାଖଲ କରିବେ ଓ ତାହା ଆଲୋଚିତ ହେବ । କାର୍ଯ୍ୟ ଯୋଜନା ଓ କାର୍ଯ୍ୟ ବିବରଣର ସୁବିସ୍ତୃତ ଆଲୋଚନା କରି ମନ୍ତ୍ରୀମଣ୍ଡଳ ସପକ୍ଷରେ ଧନ୍ୟବାଦ ପ୍ରସ୍ତାବ ବା ବିପକ୍ଷରେ ନିନ୍ଦା ପ୍ରସ୍ତାବ ଛାତ୍ରସଭାରେ ଆଗତ ହୋଇ ଆଲୋଚିତ ଓ ଗୃହୀତ ହୋଇପାରିବ ।

୧୭ । ଛାତ୍ରସଭା ବିବରଣ—ଗଣତନ୍ତ୍ର ଭିତ୍ତିରେ ମୌଳିକ ବିଦ୍ୟାଳୟ ଗୁଡ଼ିକ ପରିଚାଳିତ ହେବ । ତେଣୁ ଯେଉଁ ବିଷୟରେ ଛାତ୍ରମାନେ ସମ୍ପୃକ୍ତ, କେବଳ ସେ ସମ୍ପର୍କୀୟ ନିଷ୍ପତ୍ତି ଅଧିକାଧିକ

ମତରେ ହିଁ କରାଯିବ । ଏଥିପାଇଁ ସମସ୍ତେ ସଂଘର୍ମ ଛାତ୍ରସଭା ଅନୁଷ୍ଠିତ ହେବ । ଯେଉଁ ପ୍ରସ୍ତାବ ଅର୍ଦ୍ଧାଧିକ ମତରେ ସମର୍ଥିତ ହେବ, ତାହାର ଏକ ବିବରଣୀ ଛାତ୍ରସଭାର ସଭାପତି ପ୍ରଧାନ ଗୁରୁଜୀଙ୍କ ନିକଟରେ ଦାଖଲ କରିବେ । ପ୍ରଧାନ ଗୁରୁଜୀ ଏହି ପ୍ରସ୍ତାବରେ ସମ୍ମତ ଦେଲେ ହିଁ ତାହା କାର୍ଯ୍ୟକାରୀ କରାଯିବ; ନଚେତ୍ ନୁହେଁ ।

୯୮ । ଅଭିଯୋଗ-ବହି—ଏଥିରେ କ୍ରମିକ ସଂଖ୍ୟା, ତାରିଖ, ଅଭିଯୁକ୍ତର ନାମ, ଅଭିଯୋଗର କାରଣ, ଅଭିଯୋଗୀର ନାମ, ନିଷ୍ପତ୍ତି ଓ ମତାମତ ପାଇଁ ସ୍ୱତନ୍ତ୍ର ସ୍ତମ୍ଭ ରହିବ । କେବଳ ଛାତ୍ର-ଛାତ୍ର ମଧ୍ୟରେ ଅଭିଯୋଗର ନିଷ୍ପତ୍ତି ପାଇଁ ଏହି ବିବରଣୀ ରଖାଯିବ ।

୯୯ ନ୍ୟାୟମଣ୍ଡଳ—ବିବରଣୀ—ପ୍ରତ୍ୟେକ ମୌଳିକ ବିଦ୍ୟାଳୟରେ ଛାତ୍ର-ପଞ୍ଚାୟତ'ର ବ୍ୟବସ୍ଥା ରହିବ । ଏଥିରେ କେତେ ଜଣ ଛାତ୍ର-ବିଚାରପତି, ବିଦ୍ୟାଳୟର ପ୍ରଧାନ ଶିକ୍ଷକଙ୍କ ଦ୍ୱାରା ମନୋନୀତ ହୋଇ ସ୍ଥାନ ପାଇବେ । ସେମାନଙ୍କ ମଧ୍ୟରେ ଜଣେ ପ୍ରଧାନ ବିଚାରପତି ରହିବେ ଓ ସେ ଆବାହକର ଦାୟିତ୍ୱ ମଧ୍ୟ ତୁଲାଇବେ । ଛାତ୍ର-ଛାତ୍ର ମଧ୍ୟରେ ହୋଇଥିବା ଅଭିଯୋଗର ବିଚାର ଏହି ନ୍ୟାୟ-ମଣ୍ଡଳ ବା ଛାତ୍ର-ପଞ୍ଚାୟତ ଦ୍ୱାରା କରାଯିବ । କୌଣସି ଛୁଟି ଦିନରେ ମାସକେ ଥରେ ବା ଦୁଇଥର ଏହି ପଞ୍ଚାୟତ ବସିବ । ସେମାନେ ମଧ୍ୟ ଅଭିଯୋଗର ଅନୁସନ୍ଧାନ କରିବେ ଓ ସାକ୍ଷ୍ୟ ପ୍ରମାଣ ନେବେ । ଅଧିକ ଭୋଟରେ ନିଷ୍ପତ୍ତି କରାଯିବ । ବିଚାରପତିଙ୍କ ସଂଖ୍ୟା ଯୋଡ଼ ହୋଇଥିଲେ ପ୍ରଧାନ ବିଚାରପତିଙ୍କର ଏକ ଅତିରିକ୍ତ ଭୋଟ୍ କ୍ଷମତା ରହିବ । ନ୍ୟାୟ ମଣ୍ଡଳର ନିଷ୍ପତ୍ତି ପ୍ରଧାନ ବିଚାରପତି ପ୍ରଧାନ ଗୁରୁଜୀଙ୍କ ପାଖରେ ଲିଖିତ ଭାବରେ ଦାଖଲ କରିବେ । ପ୍ରଧାନ ଶିକ୍ଷକ

ଇଚ୍ଛାକଲେ ଏହି ନିୟମରେ କୌଣସି ଅଦଳ ବଦଳ କରିପାରନ୍ତି ବା ଅଭିଯୁକ୍ତ ଛାତ୍ରକୁ କ୍ଷମା ମଧ୍ୟ ଦେଇପାରନ୍ତି । ଅଭିଯୁକ୍ତ ଛାତ୍ରକୁ ଶାରୀରିକ ଦଣ୍ଡ ଦେବାର ଅଧିକାର କେବଳ ପ୍ରଧାନ ଗୁରୁଜୀଙ୍କର ରହିବ । ଛାତ୍ର-ପଞ୍ଚାୟତର କାର୍ଯ୍ୟକାଳ ଛ'ମାସ ବା ଏକ ବର୍ଷ ହେବ । ପକ୍ଷପାତିତାର ପ୍ରମାଣ ପାଇଲେ ପ୍ରଧାନ ଶିକ୍ଷକ ଯେ କୌଣସି ମୁହୂର୍ତ୍ତରେ ଏହି ପଞ୍ଚାୟତର ପୁନର୍ଗଠନ କରିପାରନ୍ତି ।

ଦଣ୍ଡବିଧାନ-ବିବରଣୀରେ କ୍ରମିକ ସଂଖ୍ୟା' ତାରିଖ, ଅଭିଯୁକ୍ତର ନାମ, ଅଭିଯୋଗ, ପଞ୍ଚାୟତର ନିଷ୍ପତ୍ତି; ପ୍ରଧାନ ଗୁରୁଜୀଙ୍କ ସମ୍ମତି, ଦସ୍ତଖତ ଓ ମତାମତ ଆଦି ସ୍ଥାନ ପାଇବ । କେବଳ ଗୁରୁତର ଶାରୀରିକ ଦଣ୍ଡବିଧାନ ସ୍ଥଳରେହିଁ ତାହାର ବିବରଣୀ ରଖାଯିବ । ଗୁରୁତର ଅଭିଯୋଗ ଓ ଦଣ୍ଡବିଧାନ ସ୍ଥଳରେ ତାହାର ଏକ ବିବରଣୀ ଅଭିଯୁକ୍ତ ଛାତ୍ରର ଅଭିଭାବକଙ୍କୁ ଲିଖିତ ଆକାରରେ ଜଣାଇ ଦିଆଯିବ । ଛାତ୍ରଠାରେ ଦଣ୍ଡବିଧାନର ପ୍ରତିକ୍ରିୟା ମତାମତ ସ୍ତମ୍ଭରେ ପ୍ରଧାନ ଶିକ୍ଷକ ଉଲ୍ଲେଖ କରିପାରନ୍ତି ।

୨୦ । ପୁସ୍ତକାଳୟ-ବିବରଣୀ—ବିଦ୍ୟାଳୟର ପ୍ରତ୍ୟେକ ଶ୍ରେଣୀ ପାଇଁ ଗୋଟିଏ ଲେଖାଁ ସ୍ୱତନ୍ତ୍ର ପୁସ୍ତକାଳୟ ଓ ସମୂହ ଭାବରେ ସମୁଦାୟ ବିଦ୍ୟାଳୟ ପାଇଁ ଗୋଟିଏ ପୁସ୍ତକାଳୟର ବ୍ୟବସ୍ଥା ହେବା ଉଚିତ । ପୁସ୍ତକାଳୟ-ବିବରଣୀରେ କ୍ରମିକ ସଂଖ୍ୟା; ପୁସ୍ତକର ନାମ, ଲେଖକର ନାମ, ମୂଲ୍ୟ ଓ ରସିଦ ସଂଖ୍ୟା ( Voucher No )ରହିବ । ବିଭିନ୍ନ ବିଷୟର ପୁସ୍ତକ ଭିନ୍ନ ଭିନ୍ନ ହୋଇ ଏଥିରେ ଲେଖାଯିବା ଉଚିତ ।

ଏହା ବ୍ୟତୀତ ଗୋଟିଏ ପୁସ୍ତକ-ପ୍ରଦାନ ଖାତା ( Issue-Register )ରହିବ । ଏଥିରେ କ୍ରମିକ ସଂଖ୍ୟା, ପୁସ୍ତକର ସଂଖ୍ୟା, ତାରିଖ, ନେବା ବ୍ୟକ୍ତିର ନାମ, ନେବା ତାରିଖ, ପୁସ୍ତକର

ଅବସ୍ଥା, ନେବା ବ୍ୟକ୍ତିର ଦସ୍ତଖତ, ଫେରସ୍ତ ତାରିଖ ଓ ପୁସ୍ତକାଳୟ ଦାୟିତ୍ୱରେ ଥିବା ବ୍ୟକ୍ତିର ଦସ୍ତଖତ ପାଇଁ ସ୍ୱତନ୍ତ୍ର ସ୍ତମ୍ଭ ରଖାଯିବ ।

୨୧ । **ପଠନାଳୟ-ବିବରଣୀ**—ବିଦ୍ୟାଳୟରେ ପଠନାଳୟର ବ୍ୟବସ୍ଥା ଥିଲେ ବିଭିନ୍ନ ଦୈନିକ ସମ୍ବାଦ ପତ୍ର, ପାକ୍ଷିକ, ସପ୍ତାହିକ ଓ ମାସିକ ପତ୍ରପତ୍ରିକା ଛାତ୍ରମାନଙ୍କ ପଠନ ଉଦ୍ଦେଶ୍ୟରେ ରଖାଯିବ । ଜଣେ ଦାୟିତ୍ୱ ସମ୍ପନ୍ନ ଛାତ୍ର ପଠନାଳୟ ଦାୟିତ୍ୱରେ ରହିବା ଉଚିତ । ବିଭିନ୍ନ ପତ୍ର ପତ୍ରିକା ପଠନାଳୟରେ ସଜାଇ ରଖିବା ଓ ପୁରୁଣା ହୋଇଗଲେ ସେ ସବୁ ଏକ ଅଲମିରାରେ ସାଇତି ରଖିବା ତାଙ୍କର କାମ । ଏସବୁ ପତ୍ର ପତ୍ରିକାର ତାଲିକା ମାସ ଅନୁସାରେ ଏକ 'ପଠନାଳୟ-ବିବରଣୀ'ରେ ଲିପିବଦ୍ଧ ହୋଇ ରହିବ ।

୨୨ । **ପ୍ରଗତି-ପତ୍ର**—ବିଦ୍ୟାଳୟରେ ବର୍ଷ ଅନୁସାରେ ଗୋଟିଏ ଲେଖାଁ ପ୍ରଗତି-ପତ୍ର (ଚାର୍ଟ)ରଖାଯିବ । ଏହା ଫଳରେ ବିଦ୍ୟାଳୟର କ୍ରମ-ପରିଣତି ସମ୍ପର୍କରେ ସ୍ପଷ୍ଟ ଧାରଣା ମିଳିବ । ଏଥିରେ ନିମ୍ନୋକ୍ତ ସ୍ତମ୍ଭ ଗୁଡିକ ପୂରଣ କରାଯାଇପାରେ ।

(କ) ବର୍ଷ ଅନୁସାରେ ଛାତ୍ର ଓ ଛାତ୍ରୀ ସଂଖ୍ୟା, (ଖ)ଶ୍ରେଣୀ ଅନୁସାରେ ଛାତ୍ର ଓ ଛାତ୍ରୀ ସଂଖ୍ୟା (ଗ) ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ର ଓ ଛାତ୍ରୀ ସଂଖ୍ୟା (ଘ) ବୃତ୍ତି ବା ଅନ୍ୟାନ୍ୟ ପୁରସ୍କାର ପାଇଥିବା ଛାତ୍ର ଓ ଛାତ୍ରୀ ସଂଖ୍ୟା (ଙ) ଉଚ୍ଚଶିକ୍ଷା ପାଇଁ ପ୍ରେରିତ ଛାତ୍ର ଓ ଛାତ୍ରୀ ସଂଖ୍ୟା (ଚ) ବିଭିନ୍ନ ଧନ୍ଦା ଓ ବୃତ୍ତି ବ୍ୟବସାୟରେ ନିଯୁକ୍ତ ଛାତ୍ର ଛାତ୍ରୀ ସଂଖ୍ୟା ।

୨୩ । **ପ୍ରାଚୀର-ପତ୍ର**—ବିଦ୍ୟାଳୟ ତରଫରୁ ଗୋଟିଏ ସାପ୍ତାହିକ ସମ୍ବାଦ ପତ୍ର ପ୍ରକାଶିତ ହେବ । ଏଥିରେ ବିଦ୍ୟାଳୟ, ଗ୍ରାମ, ଜିଲ୍ଲା, ରାଜ୍ୟ, ଦେଶ ଓ ବିଦେଶର ସାପ୍ତାହିକ ସମ୍ବାଦ ସ୍ୱତନ୍ତ୍ର ସ୍ତମ୍ଭରେ ପ୍ରକାଶ ପାଇବ । ଏଥିପାଇଁ ଗୋଟିଏ ଛାତ୍ର ସଂପାଦନା-ମଣ୍ଡଳୀ

ନବୀନତର ହୋଇ କାମ କରିବ । ଏହି ପ୍ରାଚୀର-ପତ୍ର ଏକ ସପ୍ତାହ ପର୍ଯ୍ୟନ୍ତ ବିଦ୍ୟାଳୟର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ମାରି ଦିଆଯିବ । ପରେ ତାହା କୌଣସି ଅଲମିରାରେ ସଜାଇ ରଖାଯିବ । ଛାତ୍ରମାନଙ୍କୁ ଦେଶ ବିଦେଶର ହାଲ୍‌ଚାଲ୍‌ ସମ୍ପର୍କରେ ସଚେତ୍‌ କରାଇବା ଏହି ପତ୍ରିକା-ପ୍ରକାଶର ପ୍ରଧାନ ଉଦ୍ଦେଶ୍ୟ ।

ଏହି ସବୁ ବିବରଣୀ ବ୍ୟତୀତ ଶିକ୍ଷକ-ଉପସ୍ଥାନ ଓ ଛାତ୍ରୋପସ୍ଥାନ ବିବରଣୀ, ବାର୍ଷିକ ଓ ମାସିକ ପାଠ-ଯୋଜନା, ଦୈନିକ ବିବରଣୀ ଇତ୍ୟାଦି କରିବାକୁ ହେବ । ସମୟ ସମୟରେ ବିଦ୍ୟାଳୟ ତରଫରୁ "ଶିଶୁ-ହସ୍ତଲିପି" ମଧ୍ୟ ପ୍ରକାଶ ପାଇବା ଉଚିତ ।

---